# କଥା କାହାଣୀ

ଶ୍ରୀ ଗୋଦାବରୀଶ ମହାପାତ୍ର

ଦ୍ୱିତୀୟ ସଂସ୍କରଣ

# KATHA KAHANEE

BY

**Godavaris Mahapatra**

*Published by*

**The Saraswata Bhandar**

CUTTACK.

1930

ମୂଲ୍ୟ ଟ ୦ ।୵ Price 0-6-0

# ସୂଚୀ





# କଥା କାହାଣୀ



## କୋଟଣ ଲମ୍ବା ନାକ

**ଦିନକର** ଛନଜଣ ଯାଉଳା ବିଦେଶରୁ ଘରକୁ ଫେର କର ଯାଉଥିଲେ । ସେ ଜନଙ୍କେ ଏକ ରାଇଜର ରଜାଙ୍କ ପାଖରେ ରହି ଯୁଦ୍ଧ-କର ବୁଢ଼ା ହେଲେ, ମାତ୍ର ଯୁଦ୍ଧ ସରିଲାରୁ ରଜା ତାଙ୍କୁ ଆଉ ପଚାରିଲେ ନାହିଁ । ତାଙ୍କ ହାତରେ ତ ପଇସାଟିଏ ନ ଥିଲା, ଗାଁକୁ ଗାଁ ବୁଲି ଯା'ଠୁ ଭାତ ମୁଠେ, ତା'ଠୁ ପେଜ ମନ୍ଦେ ମାଗି ଘରକୁ ଫେରୁଥିଲେ ।

ତାଙ୍କ ଘର ଥିଲା ନଈ ପାରି ହେଲେ ମାସକର ବାଟରେ । ବାଟରେ ଅନେକ ଗାଁ ବଣ ପର୍ବତ । ଏକ ଦିନକର ଛନଙ୍କେ ହୋଇ ଉପାସରେ ଯାଉ ଯାଉ ଏକ ଅଗମ୍ୟ ବନସ୍ତରେ ଯାଇ ପଶିଲେ ଯେ, ସେଠି ତାଙ୍କ ବୁଦ୍ଧି ଗଣ୍ଡା ହୋଇଗଲା । ସେଠି କୁଆର ଥଣ୍ଟ ନାହିଁ, କି ଗଛେ ଭଲ ଦେଖା ନାହିଁ । ପତରୁଟେ ପଡ଼ିଲେ ପଥରୁଟେ ପଡ଼ିଲା ସବୁ ଶୁଖୁଲା । ଇମିତି ବଣର ମଝିରେ କଷ୍ଟ ହୋଇଚନ୍ତି, ବେଳ ବୁଡ଼ିଗଲା । ସେଇଠା ପୁଣି ମାଘ ରାତି, ଜାଡରେ ଦାନ୍ତଯାକ କୋଳ ମାରି ଯାଉଚି

ତାଙ୍କୁ ଯାହା ଭରସା ଦିଶିଲା ନାହିଁ । ବଡବଡ ବଉଳ ହୋଇ ଭିଡ଼ ଯନ୍ତ୍ର-ଯନ୍ତ୍ରରେ ଗୋଟିଏ ଓସ୍ତ ଗଛ ମୂଳରେ ଗଦେ ନିଆଁ ଜାଳି ଦେଇ ତିନିହେଁ ରହିଲେ । ମାଣିକ ଏହା କଲେ ଯେ, ଦୁ'ଜଣ ଶୋଇଲେ ଜଣେ ତାଙ୍କୁ ଜଗି ଚାହିଁ ରହିବ । ଇମିତି କରି ତିନିଜଣଯାକ ଜଗିବେ । ସେ ବଣରେ ତ ଭରି ବାଘ, ଭାଲୁ, ଟିକିଏ କୁଆଡ଼େ ଝୁଣ୍ଟୁକନା ହେଲେ ତିନିଙ୍କ ବୁକୁ ଧୁଡ଼୍କନା ପଡ଼ୁଥାଏ ।

ରାତି ଗୁଲି ଗୁଲି ତାଙ୍କୁ ତ ବଡ଼ ହାଲିଆ ଲାଗୁଥିଲା, ଜଣେ ଜଗିଲାରୁ ଆଉ ଦୁ'ଜଣ ନିଶ୍ଚିନ୍ତରେ ନିଘୋଡ଼ ନିଦରେ ଘୁଙ୍ଘୁଡ଼ି ମାରି ଶୋଇଲେ । ହୁଏ ଉଦ୍ଧାରୁ କଣ ହେଲା ନା, ସେ ଅନ୍ଧାର କାଠକାଠି ବଣ ଭିତରୁ ଜଣେ ବାଙ୍କର ବୁଢ଼ା ଝଣ୍ଟେ ନାଲି ଠେଙ୍ଗଠେଙ୍ଗ ବନାତ ଘୋଡ଼େଇ ହୋଇ ଆସି ପଚାରିଲା, "ତମେ ଇ ବଣରେ କିଏ ହୋ ?"

ବୁଢ଼ା ପାଇକ କହିଲା, "ହଁ, ମୁଁ ଜଣେ ବାଟୋଇ । ରଜାଙ୍କ ସେଇଁ ଯୁଝ କରି କରି ମୁଣ୍ଡରୁ ବାଳ ପାଚିଲା । ଏବେ ପେଟକୁ ଦାନା ନାହିଁ । ଆଉ ଦୁ'ଜଣ ସାଙ୍ଗ ହେଉଛନ୍ତି ମୋ ପାଖରେ ଶୋଇଚନ୍ତି । ତମେ କିଏ ଏଅତେ ଆସ, ଏଠି ଟିକିଏ ନିଆଁ ପୋଇଁ କରି ଯିବ ।"

ବୁଢ଼ା ଆସି ନିଆଁ ଧାରା ପାଖେ ବସିଲା । ଟିକିଏ ସେକା ହେଲା, କହିଲା, "ଅଚ୍ଛା ଭାଇ, ତମେ ତ ମତେ ଏତେ ଅନୁଗ୍ରହ ଦେଖେଇଲ, ମୁଁ ତମକୁ ଆଉ କଣ ଦେଇ ପାରିବି କି, ଏ ବନାତଟି ଦେଉଚି ନିଅ । ସକାଳୁ ତମ ସାଙ୍ଗ ଉଠିଲେ ଦେଖେଇବ । ମନେ ରଖିଥା, ଏ ବନାତଟି ଘୋଡ଼େଇ ହୋଇ ତମେ ଯାହା ବରିବ ତା ହେବ ।" ଏହା କହି ବୁଢ଼ା ଦଣ୍ଡବତଟିଏ ହୋଇ ଗୁହୁଁ ଗୁହୁଁ ବଣ ଭିତରେ କୁଆଡ଼େ ଉଭେଇ ଗଲା ।

ଯା ଉତ୍ତାରୁ ଅନ୍ୟ ଜଣଙ୍କର ଜଗିବା ପାଳି ପଡ଼ିଲା । ସିଏ ଅଗ ଜଗିଥିଲା, ସିଏ ଶୋଇ ପଡ଼ୁ ପଡ଼ୁ ସେ ବୁଢ଼ା ବାଙ୍ଗରଟି ଫେରେ ଆଉ ଥରେ ସମିତି ଗୋଟିଏ ନାଲି ବନାତ ପିଠିରେ ପକେଇ ଲଇଁ ଲଇଁ କରି ବଣରୁ ବାହାରିଲା । ଯାହାର ପାଳି, ସିଏ ତାକୁ ଭାରି ଅଦରରେ ଡାକି ଆଉ ଜଣକ ପରି ପାଖରେ ବସେଇଲା । ବୁଢ଼ା ଗଲାବେଳେ ତାକୁ ଚମଥଳିଟିଏ ଦେଇ କହିଲା, "ହେଇଟି ଏଇ ଥଳିଟି ନିଅ । ଏଇଟି ହେଉଛି ସୁନାଥଳି । ଏଥିରୁ ତମେ ଯେତେ ସୁନା ନବ, ଏ ଆଉ ସରିବ ନାହିଁ ।" ଏହା କହି କରି ସିଏ ସମିତି ଉଭେଇ ଗଲା ।

ଯା ପରେ ପାହାନ୍ତିଆଁ ପହରକୁ ସବୁ ଶେଷ ଜଣଙ୍କର ପାଳି ପଡ଼ିଲା । ତା ବେଳକୁ ସିମିତି ସେ ବୁଢ଼ା ଆସିଲା, ପାଖରେ ବସି ନିଆଁ ପୋଇଁଲା, ଗଲା ବେଳକୁ ମନ ଖୁସିରେ ତାକୁ ଗୋଟିଏ ବଇଁଶୀ ଦେଇ କହିଲା, "ଏଇ ବଇଁଶୀଟିର ଭାରି ଗୁଣ । ଯାକୁ ଧରି ବଜେଇଲାକ୍ଷଣି ଦଳ ଦଳ ହୋଇ କୁଅଡ଼ୁ ଘୋଡ଼ା ହାତୀ ପାଇକ ସଇନ ଆସି ପାଖରେ ଜମା ହୋଇ ପଡ଼ିବେ । ଗୀତ ଶୁଣି ନାଚିବେ, ହସିବେ; ତମେ ଯାହା କହିବ ତା କରିବେ ।"

ସକାଳ ହେଲାରୁ ସଭିଏଁ ରାତିରେ କିଏ କଣ ଦେଖିଥିଲେ କୁହାକୁହି ହେଲେ । ଅଗ ଜଗୁଆଳି ବନାତଟିଏ ଦେଖେଇଲା, ମଝି ଜଗୁଆଳି ବଇଁଶୀଟି ବାହାର କଲା, ଆର ଜଣକ ସୁନାଥଳିଟି କାଢ଼ିଲା । ସେ ତିନିହେଁ ତ ପିଲାଦିନୁ ସାଙ୍ଗ, ସେତୁ ବିଚାରିଲେ, "ଆଉ ପରୁଆ କଣ ? ଅପରନ୍ତୁ ସୁନାଥଳି ତ ଅଛି, ଚାଲ ରଇଜ ରାଇଜ ବୁଲି ଦେଖିବା ।" ଯା ଉତ୍ତାରୁ ସେମାନେ ବିଦେଶ କରି ବାହାରିଲେ । କେତେ ମୁଲକ ବୁଲିଲେ, ଖାଇ ପିଇ ମଉଜ କଲେ । ସେମିତି

କେତେ ଦିନ ଗଲା । ଧନକର ଭାଇହେଁ ଭାବିରଲେ, "ଏଥର ଗୋଟିଏ ଘର କଲେ କେତେ ଦିନ ସୁଖରେ ରହନ୍ତେ ।" କେହୁ ବନାଇ ପାଇବା ବାଲା କଣ କଲା ନା, ବନାଇ ଉଧୋଡେଇ ହୋଇ କହୁଚ ଦେଲା, "ଏଇଠି ଗୋଟେ ମକାଘର ହୋଇ ଯା ।" ତା ପାଟିରୁ କଥା ସରୁ ନ ସରୁଣୁ ଦେଖିଲା ବେଳକୁ ଆଗରେ ଏକ ଦିବ୍ୟ ସୁନ୍ଦର ମକାଘର ଠିଆ । ଚାରିପାଖେ ପେଣ୍ଟି, ଗାଈଗୋରୁ ପଡ଼ିଆରେ ଗୋଠ ଗୋଠ ହୋଇ ଚରୁଛନ୍ତି, ସବୁ ଯିମିତି ହବାର ସିମିତି ହୋଇଛି । ଘର ଦେଖିବାକୁ ରାଜାନଅର ପର ଦିଶୁଛି । ଇମିତି ସମୟରେ ଏକ ହାଙ୍ଗ ଆସିଲା ଯେ, ଏ ତିନିଙ୍କି ସେ ଘର ସୁଅ ମୁହଁରେ ନେଇ ପହଞ୍ଚେଇ ଦେଲା ।

ଏଇପରି ସେଠି ରହି କେତେ ଦିନ ଗଲା । ସବୁ ଦିନ ଘରେ ରହିବାକୁ ତାଙ୍କୁ ଆଉ ଭଲ ଲାଗିଲା ନାହିଁ । ଧନକର ବାହାରି ବାଟର ହେଲେ, "ଚାଲ, ପାଖ ରାଇଜ ରଜା ପାଖକୁ ଯାଇ ତାଙ୍କ ସଙ୍ଗେ ଦେଖା କରିବା ।" ସ୍ତ୍ରୀ ବୋହୂର ହାତୀ, ଘୋଡ଼ା, ଲୁଗାପଟାକର ସବୁ ସଜବାଜ କରି ବାହାରିଲେ । ସେ ରାଇଜ ରଜାଙ୍କର ଗୋଟିଏ ବୋଲି ଝିଅ, ତା ନାଁ 'ଚେରୀଚନ୍ଦ୍ରନ ।' ରଜା ଭାରି ଡ଼େଙ୍ଗା ଲୋକ । ଏ ତିନିଙ୍କୁ ଆଦରରେ ନେଇ ଅଚ୍ଛା ସଂଭାବନା କଲେ । କହିଲେ, "ଏଥିରୁ ଜଣଙ୍କ ହାତରେ ଝିଅକୁ ଦେବି ଯେ, ମୋ ଅନ୍ତେ ସେ ରଜା ହବ ।"

ଏକ ଧନକର କଣ ହେଲା ନା, ଯୋଉ ପାଇକଟାରେ ସୁନା ଅଳଟି ଥିଲା, ସିଏ କେଜା ପାଖରେ ବସି କଥା ହଉଚି, କେମାଉ ଅଖି ପଡ଼ିଲା ସେଇ ଥଳି ଉପରେ । ପାଇକ ସେତୁ କଥାକୁ ବାଆଁରେଇ ଦେଇ ବାହାର ଅଇଲା । ନାଏ କେମା ତ ଏକ ରାକ୍ଷୁଣୀ, ହଏ ଚିନା ମାୟା ମଣିଷ ରୂପ

ଯେଉଁ ରଜାଘରେ ଜନମ ହୋଇଚ, ଏକଥା ରଜା ରାଣୀ କେହି ହେଲେ ଜାଣନ୍ତି ନାହିଁ । ଛଅ ପାଇକପାଳ ନଅରକୁ ଅଣାଇଲେ ନୁ, କାହା ପାଖେ କଣ ଅଛି କେମା ଜାଣିଥାଏ । ସେ ଦାନାକ ଗଲା । ଏଣେ କେମା କଣ କଲା ନା, ପାଇକର ସିମିତି ଥଳିଟିଏ ସେଇ ଅନୁରୂପରେ ଆଉ ଏକ ଥଳି ତିଆରି କରେଇଲା । ପାଇକ ତ ଜାଣେ ନାହିଁ ଇଏ ଇମିତି ଅଘଟଣି ବୋଲି, ତା ଅରଦାନ କେମା ତାକୁ ନଅରକୁ ଡ଼କେଇଲାରୁ ଗଲା । ଗଲାରୁ କେମା ତାକୁ କେତେ ଆଦରରେ ଖାଇବାକୁ ପିଇବାକୁ ଦେଲା, ଆଉ କଣ କଲା ନା, ଗୋଟିଏ କ ମୋଦକ ଦେଇଥିଲା ଯେ ତାକୁ ଖାଇଦେଲେ ନିଦ୍ଧୋଡ଼ ନିଦ ଆସିବ । ପାଇକ ଜଭରେ ମୋଦକ ବାଜିଲାରୁ ସିଏ ଅସକତିଆ ହୋଇ ବସିଥିବା ପଲଙ୍କରେ ଗଡ଼ ପଡ଼ିଲା । ଇମିତି ସମୟରେ କେମା ତା ଅଣ୍ଟାରୁ ସୁନା ଥଳିଟି ଫିଟେଇନେଇ ଆଉ ଥଳିଟି ବାନ୍ଧିଦେଲା । ପାଇକ ସ୍ତ୍ରୀ ସବୁ କିଛି ଜାଣେ ନାହିଁ ।

ସକାଳୁ ଓଳିଦେଲେ ରଜାଘରୁ ମେଲାଣି ନେଇ ଘରକୁ ଆଇଲେ । ଆସି ମଝିଅଁ ପାଇକ ଥଳି ଦେଖନ୍ତେ ତ, ମୁହାଁକୁ ଅଉ ବେଶି ସୁନା ବାହାରିଲା ନାହିଁ, କି ଥଳି ଅଉ ଭରତି ହେଲା ନାହିଁ । ତାର ସେଠୁ କାଲି କଥା ମନେ ପଡ଼ିଲା, "କେମା ତ ପଚାରୁଥିଲା, ସେ ଏକା ଏହା କରିଚି" କହି କହି ହେଁ ହେଁ କାନ୍ଦିଲା, କେତେ ମୁଣ୍ଡ ବାଡ଼େଇଲା, ଛୋଡ଼ାକାମୁଡ଼ା ହେଲା । ହେଲେ କଣ ହବ, ଗଲା କଥା ତ ଗଲାଣି । ଯେ ପାଇକ ପାଖେ ବସିଥିଲା, ସିଏ କହିଲା, "ଏଇଥିକି ଏଡ଼େ ଚିନ୍ତା ? ରହ, ରହ, ମୁଁ ସବୁ ଠିକକରି ଦେଉଚି ।" ଯୋ କହି ସିଏ ଯିମିତି ବସିଥିଲା ସିମିତି ଯାଇ କେମା ମହଲ ଦୁଆରମୁହଁରେ ପହଞ୍ଚିଗଲା । ଗଲାବେଳକୁ କେମା କଣ କରୁଚି ନା, ଏକା ଜାଗାରେ ଥଳିରୁ ସୁନା କାଢ଼ି ଗଣିବାରେ ଲାଗିଚି;

ମୁହଁ ଟେକି ଦେଖିଲା ବେଳକୁ ପାଖରେ ପାଇକ। ସିଏ ତ ଏକାବେଳକେ ଅତରଛି ! ପାଟି କଲା, "ଚୋର, ଚୋର, ଧାଇଁ ଆସ !" ପାଟି ଶୁଣି ଲୋକେ ଚାରିଆଡୁ ଧାଇଁଲେ। ଯା' ଦେଖି ପାଇକର ବୁଦ୍ଧି ହଜିଗଲା। ତାର ତ ପଟାକପାଳ, ସିଏ ଯେବେ ବିଚାର ଦେଇଥାନ୍ତା, "ମୁଁ ଘରକୁ ଯିବି", ତେବେ ଯାଇ ଆଖି ପିଛୁଳାକେ ଘରେ ପହଞ୍ଚିଥାନ୍ତା। ତାର ସେତିକି ବୁଦ୍ଧି ହେଲା ନାହିଁ, ଜଙ୍ଗଲରେ ଧାଇଁ ଧାଇଁ ପଳେଇବ ବୋଲି ଗୋଟିଏ ପଞ୍ଜିର ଚାଟେ ଆର ପାଟକୁ ଡେଇଁ ପଡ଼ିବା ବେଳକୁ ବନାତଟା ଲାଗିଗଲା ଯେ, ଲୋକ ପଡି ତାକୁ ଧରିଦେଲେ। ରଜା ତ ତାକୁ ଚିହ୍ନନ୍ତି, ଅଉ ହାଣ କରିବେ କି, ତାଠୁ ସେଇ ବନାତଟି ଛଡ଼େଇ ରଖି ଛାଡ଼ି-ଦେଲେ।

ପାଇକ କାନମୁଣ୍ଡା ଅଉଁସି ଅଉଁସି—ମୁହଁ ଶୁଖି ଯାଇଛି, ଥୋଡ଼ ଓହଳି ପଡ଼ିଛି—ଅଳେଇ ପଳେଇ ଘରକୁ ଆସିଲା। ଯା' ଦେଖି ଯେଉଁ ପାଇକ ପାଖେ ବଇଁଶୀଟି ଥିଲା ସିଏ କହିଲା, "ଅଉ କାନ୍ଦ ବେ ବେଚଲେ କଣ ହବ ଭାଇ ? ଥିର ହୁଅ, ମୁଁ ଏଇଲାଗେ ସବୁ ଦେଖୁଅଛି।"

ଯା' କହି ଯିମିତି ସିଏ ବଇଁଶୀ ବଜେଇ ଦେଇଛି ସିମିତି ଦଳକୁ ଦଳ ଅଇଲେ ସଇନ, ପାଇକ, ହାତୀ, ଘୋଡ଼ା, ରଥ ଆସି ତା ପାଖରେ ପହଞ୍ଚିଗଲେ। ସିଏ ଅଟଗ ଅଗେ ଢାଲି ହୁକୁମ ଦେଲା, "ଆସ, ଯେ ରଜା ନଅରକୁ ଭାଙ୍ଗି ଚୂନା କରିଦେବା।" ସଭିଏଁ ଗଲେ, ରଜାଘର ନଅର ଘେରି ରହିଲେ। ଅଉ କାହାର ଅଇଲାଆସ ରହିଲା ନାହିଁ ଯେ, ସେ ନଅର ଭିତରୁ ବାହାରକୁ ଆସିବ। ପାଇକ ସେଠୁ ରଜାପାଖକୁ କହି ପଠେଇଲା, "ତମ ଜେମା ଆମର ଠଲ ଆଉ କୋଠି ଫେରେଇ ନଦେଲେ ଆଖି ପିଛୁଳାକେ ଏ ରାଇଜ ଧୂଳି କରି ଉଡ଼େଇ ଦେବା।"

ରଜା ତ ଏ ଦୁବୁ ରହସ୍ୟ ଜାଣନ୍ତି ନାହିଁ; ଗଲେ, ଜେମାକୁ ସବୁ କଥା କହିଲେ । ଜେମା କହିଲା, "ମଉ ମୁଁ ଆଗ ଥରେ ଦେଖେ, ତାଙ୍କୁ ନ ପାଇଲେ ସିନା ଫେରେଇଦେବ ।" ସ୍ତ୍ରୀ କହି କଣ କଲା ନା ସାଝ ହେଲାରୁ ଖଣ୍ଡେ ଚିରା ଲେଙ୍ଗଡା ଦରଭି ପିନ୍ଧି, ଭଙ୍ଗା ଠୋକେ-ଇଟେ ହାତେଇ, ବାଳ ଭୁରୁଚୁ ଭୁରୁଚୁ ଉଡ଼ୁଚି, କୋଳ ବକଭ ବୋଲି ପାଇକମାନେ ଯେଉଁ ଘରେ ଥିଲେ ସେଠାକୁ ଗଲା ।

ସକାଳୁ ଉଠି ସ୍ତ୍ରୀ ଦୁଆରକୁ ତା ଦୁଆର ହେଲା, ସେଠୁ ଠାଏ ବସି ଗୀତ ଗାଇଲା । ଇମିତ ଗୀତ ପରା ନାହିଁ ନ ଥିବ, ଯିମିତ କଣ୍ଠ ସ୍ୱର ! ଯେତେ ସୁଆଙ୍ଗ ପଇକ ସାମନ୍ତ ଥିଲେ ସମସ୍ତେ ଆସି, ତାକୁ ଏକାଠି ଘେର ବସିଲେ । "ଆଉ ଗୋଟିଏ ଗାଅ, ଆଉ ଗୋଟିଏ ଗାଅ" କହି ତାକୁ ଉଚ୍ଛନ କର ପକେଇଲେ । ଶେଷକୁ ପୋତ୍ର ପାଇକ ପାଖରେ ବଇଁଶୀଟି ଥିଲା, ସିଏ ଶୁଣିମାକୁ ଅଇଲା । ସିଏ ଅଉ ଚିହ୍ନି ପାରଲା ନାହିଁ ଯେ ଏ ଜେମା; ଏହାର ସାଙ୍ଗେ ସବୁ ଅଦଉଡ । ଜେମା ସ୍ତ୍ରୀକୁ ମାଳକ ଚହ୍ନିଲାଣି । ସେ ଆଗରୁ ବଗୁର ସାଙ୍ଗରେ ଜଣେ ଦାସୀ ନେଇଥିଲା । ପାଇକକୁ ଦେଖି' ଜେମା ଦାସୀକି ଆଖି ଠାର ଦେଲା ଯେ, ସିଏ ଗୁଲ୍ଲକନା ଲୁଚାଡେ ଯାଇ ଚେଇ ପାଇକ ବସାରେ ପଶିଗଲା । ପାଇକ ବଇଁଶୀଟିକି ଅଲ୍ମଗୁଣୀରେ ଓହଳେଇ ଦେଇ ଥିଲା । ଦାସୀ ଧେଇଁକି କାଢ଼ିଲେ ଲାକି ଯେରେ ଜେମା ପାଖକୁ ଫେର ଅଇଲା । କେହି ଏକଥା ଜାଣି ପାରଲେ ନାହିଁ, ବଦ୍ଦେଁଯାକ ମିଶି ଦେଡେବେଳେ ନଅରକୁ ଫେର ଅଇଲେ ।

ବଇଁଶୀଟି ଯିମିତ ହାତରୁ ଗଲା ପାଇକର ସିମିଠ ଏବୁ ଅନ୍ଧାର ଗଲା । ଅଉ ଯୁଦ୍ଧ ନା ପୁଷ୍ପ, ସିଏ ଯେତେ ପାଇକ ଥିଲେ ଗୁହୁଁଗୁହୁ

ସବୁ କୁଆଡ଼େ ଉଡ଼ିଗଲେ । ଏ ପାଇକ ଛଅଜଣ ଯେଉଁ ମାଗିଖିଆଙ୍କୁ ଦେଇ ମାଗିଖିଆ ହୋଇ ବୁଲିଲେ ।

ସୁନାଥଳଠି ହଳବାରୁ ମହିଁଆ ପାଇକ ମନରେ ତ ବଡ଼ ଦୁଃଖ ହୋଇଥିଲା, ଆଉ ଦି'ଜଣଙ୍କୁ ଡାକି କହିଲା, "ଦେଖ୍‌ରେ ତ ଭାଇ, ଆମେ କେଡ଼େ ନିକପାଳିଆ । ଇନ୍ଦ୍ର ସଂପତ୍ତି ପାଇ ଆମକୁ ଭୋଗ ହେଲା ନାହିଁ । ଆଉ ଜୀବନରେ କଣ ଅଛି ? ଚାଲ, ଏଣିକି ଯେଝା କପାଳ ଅଦାର ଯିଏ ଯୁଆଡେ ଯିବା ।" ଏ କଥାକୁ ଆଉ ଦି ଜଣ ନ ମାନି ଏକାଠି ଗଲେ, ଏ ତିନିଙ୍କ ମନଦୁଃଖରେ ଗୋଟିଏ ଗୋଟିଏ ବାଲି ଅଡ଼ ଏକା ବାଟରେ ଗଲା । ଯାଉ—ଯାଉ—ଯାଉ—ବାଟ ପଡ଼ିଲା ଅଗାଧ ବନସ୍ତକୁ । ତା ମନ ତ ଗଲା କଥା ଭାବି ଦହଗଞ୍ଜ ହେଉଥିଲା, ତାକୁ କଣ ଆଉ ବାଟ ଦିଶୁଚି ନା ଘାଟ ଦିଶୁଚି ? ସନ୍ଧ୍ୟା ହେଲା ବେଳକୁ ସିଏ ଯାଇଁ ଘୋର ବଣ ମଝିରେ, ଯୁଠ ଦେଇ ବୁଢ଼ା ବାଘରକୁ ଦେଖିଥିଲେ, ସେ ପାଖାପାଖି ହେଲାଣି । ତାକୁ ତ ବଡ଼ ଅମକଢଥା ଲାଗୁଥିଲା, ଅଣ୍ଡାଳୁଆ ହୋଇ ଅର୍ଜିବାକୁ ଏକ ଗଛ ମୂଳେ ବସିଲା । ବସୁ ବସୁ ଯେଉଁଠି ତାକୁ ନିଦ ଲାଗି ଗଲା ଯେ, ତାର ଆଉ ଚେତା ଖବର ରହିଲା ନାହିଁ ।

ତାର ନିଦ ଭାଙ୍ଗିଲା ବେଳକୁ ସକାଳ ହୋଇ ଖରା ପଡ଼ି ଗଲାଣି । ଉଠିଲା । ତା ପେଟ ଜାଳି ଭୋକରେ ଜଳୁଚି, ବଣ ଚାରିଆଡ଼କୁ ଅଖି ବୁଲେଇଲା । ଦେଖିଲା, ଗୋଟେ ଗଛରେ ଶଗଡ଼େ ଜାମୁକୋଳି କଳା ମଚ ମଚ ହୋଇ ପାଚି କରି ରହିଚି । ଇମିତି ଏଡ଼େ ଏଡ଼େ କୋଳି ଯେ, ଟିପ ବାଜିଲେ ଫାଟି ଯିବ ପରି ! ଇଏ ଦେଖୁ ଠେଙ୍ଗାଡ଼ ହୋଇ ଉଠିଲା, ପାଖରୁ ପାଖରୁ ମୁଠାମୁଠା ତୋଳି ଅଣି ଅଗ ଖାଇ ବସିଲା । ଗୋଟେ ଖାଇଲା, ଯୋଡ଼େ ଖାଇଲା, ଚୋଟାଏ ଖାଇଲା,

ଆଉ ଗୋଟେ ଖାଇଲା ବେଳକୁ କଣ ହେଲା ନା, ତା ପାଟି ଆଗରେ ଆସି କଅଣ ଗୋଟେ ହାବୁଡ଼ିଲା ଯେ,ହାତ ଆଉ ପାଟିକି ଗଲା ନାହିଁ । ସିଏ ଟେଳବର ହାତରେ ଦରଣ୍ଡିଲା, ଦେଖିଲା ତା ନାକଟା ଲମ୍ବା ହୋଇ ବଢ଼ି ଯାଉଚ । ଦେଖୁ ଦେଖୁ ନାକ ବଢ଼ିଲା ଯେ,ବଢ଼ିଲା ଯେ,ପାଟି ଡେଇଁ ବୁକୁ ଉପରକୁ ଆସି ଓହଳ ପଡ଼ିଲା । ସିଏ ତ ପାଟିକରି "ହେ ଜଗନ୍ନାଥେ, ହେ ଲୋକନାଥେ, ଫୁଲ ଚଢ଼େଇବି, ମାଳ ଚଢ଼େଇବି" କହି କାନ୍ଦୁଚି; ଏଣେ ବେଳକୁ ନାକ ତଳେ ଆସି ବାଜଲାଣି । ତା ଦେଖି ତା କଲିଜା ପାଣି, ଅଡ଼ଙ୍କିଆ ହୋଇ ଗୁରୁଜାତ ଛାଡ଼ି ଦେଇ ତଳେ ବସି ପଡ଼ିଲା । ଦେଢ଼େଙ୍କେ କ [illegible] ରହିଲ ? ସିମିତି ବଢ଼ିଲା, ଆଉ, ସେ ଏତେ ଗରୁ ହେଲା ଯେ ସିଏ ତାକୁ ସମ୍ଭାଳି ଉଠି ପାରିଲା ନାହିଁ, କି ବସି ପାରିଲା ନାହିଁ, ତଳେ ଚିତ୍ ହୋଇ ପଡ଼ିଗଲା । ନାକଟା ଇଅଡ଼େ ସିଅଡ଼େ ହୋଇ ନଈ ମାଡ଼ିଲାପରି ବଢ଼ି ବଢ଼ି ଗଲା, ଯିମିତି କି ସତେ ଅବା କଣ୍ଟା ଯାକ ଘେରେଇ ପକେଇବ ।

ଦେଖିକି ବେଳକୁ କଣ ହୋଇଛି ନା, ତାର ଯେଉଁ ଆଗ ଦାଙ୍ଗ ପାଇକ ଦୁ'ଜଣ ଥିଲେ, ସିଏ ସେଇ ବଣ ପାର ହେଉଥିଲେ । ଯାଉ ଯାଉ ଆଗ ଜଣକ ବାଟରେ କଅଣଟାରେ ଝୁଣ୍ଟି ତଳେ ପଡ଼ିଗଲା । ଉଠିକରି ଦେଖେ ତ ବରସିଆ ପରି ଗୋଟେ ଏଡ଼ୁଟେ, ତାର ଏ ମୁଣ୍ଡ ନାହିଁ କି ସେ ମୁଣ୍ଡ ନାହିଁ । ଭିତରଟା ଫମ୍ପା, ତଳିଲେ ଲତ ପତ ହେଉଛି । କହିଲା, "ଇଏ ତ ବଡ଼ ଅଦ୍ଭୁତ କଥା । ଗୋଟେ ନାକ ପରି ଦିଶୁଚି । ଗୁଲ ଏଟା ଯୋଉଠୁ ବାହାରିଚ ସେଠ କି ଯିବା ।" ବଡ଼ରି ବଡ଼ରି ହୋଇ ଦି ପାଇକ ଯାକ ତାକୁ ଦେଖି ଦେଖି ଆଗକୁ ଆଗକୁ ବଣ ଭିତରକୁ ପଶିଲେ । ଢୋଲେ କି ପାଅପା ବାଟ ଗଲେ ଉପରୁ ଦେଖିଲେ ଯେ, ସେଇଟା ତାଙ୍କ

ଯାଥି ବାଲିର ନାକ ! ଯାମ୍ପିବାଲି କଣ କରନ୍ତ ନା, ଲମ୍ଭେଇ ଦେଇ ପଡ଼ନ୍ତ । ଆଉ ଯଥା କହି ପାରୁ ନାହିଁ କି କାନ୍ଦି ପାରୁ ନାହିଁ । ଏମାନେ କେତେ ଚିହ୍ନନ୍ତ କଲେ ତାକୁ ସେଠୁ ନବାକୁ, ମାହକ ପାରିଲେ ନାହିଁ । ବାଡ଼ି ଅଣିଲେ, ଡଡ଼ା ଅଣିଲେ, ତେବେକେ ଟେକି ପାରିଲେ ନାହିଁ । ତା ନାକୁଠା ତ ଏକା ପରବତ ଭଳି ଓଜନ, ଟେକିବେ କମିତ ? ଜଣେ ହାତ ଧଇଲ, ଜଣେ ଗୋଡ଼ ଧଇଲା, ଇମିତ କରି ହର ଘୋଷରି କରି ଗଣ୍ଡେ ବାଟ ନେଲେ । ଶେଷକୁ ଲାଭୁକିନା ଚଳେ ଚକେଇ ଦେଇ, ଝାଳ ଗମ ଗମ ହୋଇ ପଡ଼ୁଚ, ବସି ପଡ଼ିଲେ । କହିଲେ, "ନା, ଆଉ ପାରିବା ନାହିଁ ।" ସେଇ ସମୟରେ କାହାର ଗୋଟେ ପୋଷା ଗଧ ସେଇ ବାଟେ ବଣ ଭିତରେ ପଳାଉଥିଲା । ତାକୁ ଅଗୁଳ ଅଣି ତା ପିଠିରେ ଲଦିଲେ ନବାକୁ । ଗଧ ପରି ଜୀବ, ଭାର ବୋହିବାକୁ ଜନମ, ହେଲେ, ଲଦି ଦେଲାରୁ ତା ପିଠିଟା ଭୂଇଁକି ଲସି ଯାଉଥାଏ, ଅଳପ ବାଟ ଯାଇଚନ୍ତି, ସିଏ ମଲା ଦରକି ହେଲା । ତାକୁ ସେଠୁ ଫିଟେଇ ଦେଇ ଦହେଁ ଥକାମାରି ବସିଗଲେ ।

ସେଇ ସମୟକୁ କଣ ହେଲା ନା, ସେଇ ଯେଉଁ ବୁଢ଼ା ବାଙ୍ଗର ଗଛରେ ଏ ଭଉଣିଙ୍କୁ ବନାଉ ହେଉଥିଲା, ମୁଚକି ହସା ଦେଇ ବଣ ଭିତରୁ ବାହାରିଲା । ପଚାରିଲା, "କି ହୋ, କଣ କରୁଚ କି ?" ଏ ଦହେଁ ତାକୁ ଦେଖିଲେ, ପାଦକୁ ଡାକି ଆଦ୍ୟରୁ ଅନ୍ତ ଯାଏ ସବୁ କଥା କହିଲେ । ସିଏ ସେଠୁ କହିଲା, "ହଉ, ହଉ, ମୁଁ ସ୍ଆକୁ ଭଲ କରି ଦେବି ।" କହି, ପାଖରେ ଗୋଟେ କମଳା ଗଛ ଥିଲା, ସେଥିରୁ ଗୋଟେ କମଳା ଅଣି ସେଇ ବଡ଼ନାକୁଅକୁ ଯିମିତ ଛୁଇଁଦେଲା ତା ନାକୁଠା ନିମିଷ ଅଗପରି ସାନ ହୋଇଗଲା । ସ୍ଆ ପରେ ସେ ସେଇ ଦିନିଜଣଯାକୁ ବସେଇ କହିଲା, "ତୁମେ

ବହୁତ ବୁଲିଲଣି, କେତେ ହଇରାଣ ହେଲଣି । ହଉ, ଏବେ ଜାଅ ଏ କମଳାରୁ ପୁଞ୍ଜେ, ଆଉ ଜାମୁକୋଳିରୁ ପୁଞ୍ଜେ । ଜାମୁ ଯାହାକୁ ଖୁଆଇ ଦବ, ତା ନାକଟା ଏମିତି ବଢିଯିବ; କମଳା ଖୁଆଇ ଦେଲେ ଛୁଡ଼ିଯିବ । ତମେ ସିଧା ସଧା ଯାଇ ରାଜଜେମା 'ସରଗଗୃହ' ପାଖକୁ ଯାଅ । ତାକୁ ଜାମୁରୁ ଗୋଟେ ଖୁଆଇ ଦବ ଯେ, ସ୍ୱାର ଯିମିତି ନାକ ବଢିଥିଲା ତାର ସମସ୍ତ ଢୋଡ଼ଏ ଗୁଣ ହୋଇ ବଢିଯିବ, ଛୁଆ ପଲ୍ଲ ସରୁ ହୋଇଯିବ । ତା'ପରେ ତମେ ଯାହା ଆଣିମା କଥା, ସେଇଟାକଟେକଲେ ଅଣି ପାରବ ।"

ସ୍ୱା କହୁ ସିଏ କୁଆଡ଼େ ଉଭେଇ ଗଲେ ।

ଯେଉଁ ପାଇକର ନାକ ବଢିଥିଲା, ରଜା ଘରକୁ ସିଏ ଯିବ ବୋଲି କଥା ହେଲା । କାଇଁକି ନା, ସିଏ ସବୁ କଥା ଅଙ୍ଗେ ଲଭେଇଚି । ଆଉ ଦିଜଣ ଘରେ ରହିଲେ । ସକାଳେ ସିଏ ଏକ ମାଳିବେଶ ସଜକରି କଳା ମସମସ କୋଳି ଗୁଡ଼ାଏ ପଛିଆଟିରେ ଧରି ରଜାଙ୍କ ପାଖରେ ପହଞ୍ଚି କହିଲା, "ମଣିମା, ବହୁତ ଦୂରରୁ ମୁଁ ଏ କୋଳି ଆଣିଚି । ଇମିତି କୋଳି ଆଉ କାହିଁ ଦେଖା ନାହିଁ ।" ରଜା ଦେଖିଲେ, ସତକୁ ସତ ଭାରି ବଡ଼ କୋଳି ହୋଇଚି । ସିଏ ଦେଖିଲା ତା ପାଟିରୁ ଲାଳ ବୋହିଲା । କେତେ ଗରାଖ କିଣିବାକୁ ଆଇଲେ, ମାଳିଆ ମାଳୀ ସମସ୍ତଙ୍କି ଫେରେଇ ଦେଇ କହିଲା, "ସ୍ୱାକୁ ମୁଁ ଜେମାମଣିଙ୍କ ପାଇଁ ଅଣିଚି; ଆଉ କାହାକୁ ଦେବ ନାହିଁ ।" ଜେମା ସ୍ୱା ଶୁଣିଲା କ୍ଷଣି ଦାସୀକି ପଠେଇ ମୂଲ ଦେଇ କୋଳିଯାକ କିଣେଇ ନେଇଗଲା ।

ମାଳିମସ୍ତେ ମାଳୀ ଘରକୁ ଗଲା । ସେତେବେଳେ ଜଣା ହେଲା ନା, କୋଳି ତ ଖାଲି ପାଟ କରୁଥିଲା; ଜେମା ଦେଖିଲାକ୍ଷଣି ପାଟିକି ପଠେଇଲା । ତାଙ୍କ

ଖାଇ ଗୁଡ଼ଟା ଖାଇଲା ବେଳକୁ, ଆଶ୍ଚର୍ଯ୍ୟ କଥା, ନାକଟା ବଢ଼ିଲା ଯେ ଆଉ ଇମିତି ସିମିତି ନୁହେଁ, ନଈସୁଅ ପର ବଢ଼ିଲା । ଜେମା ତ ଖାଲି ବୋବାଉଛି, ମାଆଲୋ ବୋଲି ପାଟି କରୁଥାଏ । ତେଣେ ନାକ ବଢ଼ି ବଢ଼ି ଘର, ପଞ୍ଜର, ନଅର, ବଗିଚା, ସିଂହଦୁଆର ଡେଇଁଲା, ସେଠୁ ଚାଲିକି ଗଲା, ହାଇକା ହାଇ ହୋଇ କୁଅଡ଼େ ଗଲା, ତା ଆଉ କେହି କଳି ପାରିଲେ ନାହିଁ ।

ରଜାଙ୍କ ମନରେ ଛନକା ପଶିଲା । ଟୋଟିଏ ବୋଲି ଝିଅ, ମୁଲକ ସାରା ଢେଣ୍ଡରା ଦିଆ ହେଲା—"ଯିଏ ଜେମାର ଏ ରୋଗ ଭଲ କରିଦେବ ସିଏ ସୁନା, ରୁପା, ହାତୀ, ଘୋଡ଼ା, ଯାହା ଯେତେ ଲୋଡ଼ିବ ସେତେ ପାଇବ ।" କେତେ ବଇଦ ଆସି ହାତ ଦେଖିଲେ, ଜୋତଷ ଆସି ଜାତକ ଦେଖିଲେ, ଦଶା ନେଉଟେଇବାକୁ ଦିଅଁ ଦେବତା ନଅରାକୁ କହିଲେ, ଗୁଣିଆ ଆସି କେତେ ଉପାୟ କଲେ; ହେଲେ, କେହି ହେଲେ ଭଲ କରି ପାରିଲେ ନାହିଁ ।

ଶେଷକୁ ସେଇ ବୁଢ଼ା ପାଇକ ବଇଦବେଶ ପକେଇ ରଜାଙ୍କ ପାଖକୁ ଗଲା । କହିଲା, "ମୁଁ ଆସିଛି ମାସକ ବାଟ ବିଦେଶରୁ; ମୁଁ ଏ ରୋଗ ଭଲ କରିଦେବି ।" ସିଏ ତ ଏତେ ନାଟ ଲଗେଇଛି, ଭଲ କଣ କରିବ, ମନେ ମନେ ଭାବୁ ଥାଏ, "ବେଶୁଣୀକି ଅଉର କଷ୍ଟ ଦେବି ।" ସାଙ୍ଗେ ସାଙ୍ଗେ ଜାମୁ ପୁଞ୍ଜେ ଲୁଚେଇ ଦୋରୁଅ ଟିକିଏ ନେଇଥାଏ । ରଜା ତାକୁ ନଅରକୁ ପଠେଇ ଦେଲେ । ସେ ଗଲା, ଜେମାର ନାକ ଦେଖିଲା, ନାଡ଼ୀ ଚପିଲା, ଅଇଲା ବେଳକୁ ସେଇ ଜାମୁ ଦୋରୁଅରୁ ଗୁଡ଼ାଏ ଚୋପା ଦେଇ କହିଲା, "କାଲିକି ମୁଁ ଆସିବି ।" ଜେମା ତ ଅସୁରୁଣୀ, ଆଗତ ଭବିଷ୍ୟ କଥା ଜାଣିପାରେ; ମାତ୍ର ଜାମୁ ଦୋରୁଅ ଦେଖି ତାର ସେ ବୁଦ୍ଧି କୁଅଡ଼େ

ଲୋପ ହୋଇଗଲା ଯେ, ସିଏ ଘର ମଣିଷଙ୍କୁ ଚିହ୍ନିପାରିଲା ନାହିଁ, ଆଉ ବଇଦକୁ ଚିହ୍ନିବ କଣ ? ସିଏ ଯାହା ଦେଲା ଖାଇଲା । କାମୁ ଖାଇଲାଣି ତ ଏତେ ନାହିଁ, ତା ଉପରେ ମୋହନ୍ତରୁ ଆଉ ପାଣି ପଡ଼ିବାରୁ ତାକୁ ଭଲ ହବ କଣ ଆହୁରି ବେଗରେ ବଢ଼ିଲା । ଅରଦିନ ପାଇକ ବାଟରେ କମଳାରଙ୍ଗ ଚମ୍ପୁଡ଼ ଅଣିଥିଲା । ଜାଣିଲା ଘର ଇଆନ୍ତୁ ସିଆନ୍ତୁ ବେଗ ଉପସର୍ଗ ଦେଖି ଦେହରୁ ଢୋପେ ମାଙ୍କ ଦେଲା । ସେ ଦିନ ରାତିରେ ଜେମାକୁ କିଛି ଭଲ ଲାଗିଲା । ପାଇକ ଆଉ ଦିନ ଅଣି ଜେମାକୁ ଅଉର ଭସ୍ମ ଦେଖାଇବା ପାଇଁ ଅନ୍ଧ କରି ଆଉ ପାଣି କାମୁ ତୋଳୁଅ ଦେଲା ଯେ ତାକ ଯାହା ଥିଲା ଧଳିକା ଭିତରେ ତାର ଦଶଗୁଣ ବଢ଼ିଲା ପରି ହେଲା । ହାତ ପାଇଲା ବେଳକୁ ରଜା ରାଣୀଙ୍କ କାଳିଲା କହି ଦେଇ ନାହିଁ । ପାଇକ ସେବେଠୁ ସକାଳୁ ଅଥିଲା, ହାତ ଦେଖିଲା, ଏକୁଟିଆରେ ଜେମାକୁ କହିଲା, 'ମତେ ଲାଗେ, ତମେ କେବେ କାହାର କଣ ଜଳାଷ ଖେଳରେଇ ଆଣି ରଖିତ କି ?" ଜେମା ଏ କଥା ଶୁଣି ପାଇକ ଉପରେ ଭଉ ରାଗିଲା, ନାହିଁ ନାସ୍ତି କଲା । ପାଇକ କହିଲା, "ହଉ, ନାହିଁ କଲେ କର; ମାବ ଜାଣିଥାଅ ଯେ, ତା ଫେରେଇ ନ ଦେଲେ ଏ ରୋଗରେ ମରିବ ।" ଏହା କହି ପାଇକ ଯାଇ ରଜାଙ୍କୁ ସବୁ କଥା କହି ଦେଲା । ରଜା ଜେମା ପାଖକୁ ଆସି କେତେ କାଉଁଳେଇ ସଉଁଳେଇ ତାକୁ ବୁଝାଇଶାଣ୍ଠି କହିଲେ, "ମାଲ ମୋର, ଧନ ମୋର, ସେ ବନାତ, ଅଲ, ବଉଁଶୀ ପାଖରେ ରଖିଛୁ ଯେବେ ଫେରେଇ ଦେ ।"

ବାପ କଥା ଶୁଣି ଶେଷକୁ ରଜାଝିଅର ଭଲ ବୁଦ୍ଧି ଆସିଲା । ଦାସୀ ହାତରେ ବନାତ, ଅଲ, ବଉଁଶୀ ଅଣେଇ ବଇଦକୁ ଦେଲା, କହିଲା, "ଏହା ସବୁ ଯେଉଁ ପାଇଙ୍କୁ ଆଣି ଦେଇ ପଠେଇବ ।" ପାଇକ

ସ୍ତ୍ରୀ ପାଇଲା ଉତ୍ତାରୁ ଗୋଟେ କମଳା ତାକୁ ଖାଇବାକୁ ଦେଲା ଯେ, ସେଥିରେ ତା ନାକ ଭଲ ହୋଇଗଲା । ସେ ଯେଉଁ ଜେମାକୁ ସେଇ ଜେମା ଘର ଦଖିଲା । ହେଲେ, ଅଗତଭବଣ ବୁଦ୍ଧି ଆଉ ତାର ଅଧିକା ନାଇଁ । ପାଇକ ରଜାଙ୍କ ପାଖରୁ ମେଲାଣି ଘେନି ବନ୍ଧାଛଟି ଧୋଡ଼େଇ ହୋଇ ଅଖି ପିଳୁଳାଟକ ଘରେ ଯାଇ ପହଞ୍ଚି ଗଲା । ସାଥୀ ଦି' ଜଣ ସବୁ କଥା ଶୁଣି ଭାରି ଆନନ୍ଦ ହେଲେ, ଥାଙ୍ଗ ହୋଇ ସୁଖରେ ରହିଲେ ।

କେତେ ଦିନ ଉତ୍ତାରୁ ସେଇ ରଜା ମରିଯିବାରୁ ରାଇଜରେ କିଏ ରଜା ହବ ବୋଲି ପାଟହାତୀ ସୁନାକଳସ ଧରି ବୁଲୁଥିଲା । ଏ ତିନି ଜଣ ସଇଡ଼ରୁ ବଡ଼ ପାଇକ ତାଙ୍କୁ ପାଉଧିକ ଯାଇଥିଲା । ହାତୀ ତା ମୁଣ୍ଡରେ ସୁନାକଳସ ଢାଳି ନଅରକୁ ନେଇଗଲା । ସିଏ ରଜା ହୋଇ ସାଙ୍ଗ ଦି' ଜଣଙ୍କ ଡାକେଇ ନେଲା, ରାଇଜର ପାତ୍ର ମନ୍ତ୍ରୀ କରେଇ ଦେଲା । ଜେତେବେଳେ ଜେମା ଜାଣିଲା ନା, ପଇକ ରଜା ହବାର ଦେଖି ଭୟରେ ରାଣ୍ଡି ରାଣ୍ଡି କୁ' ବଣରେ ଯାଇ ପଶିଲା ଯେ, ତାର ଅଉ କଣ୍ଟ ଅନ୍ତ ମିଳିଲା ନାଇଁ । ପାଇକ ତିନି ଜଣ ମହାଆନନ୍ଦରେ ରାଜୁତି କରି ରହିଲେ । ମୁଁ ଗଲାରୁ କଥା ନ କହିଲେ ।



# କପାଳ ଲିଖନ କେ କରିବ ଆନ

**ଗୋଟିଏ** ଭାରି ଦୁଃଖୀ ଲୋକ ଥାଏ ଯେ, ଏକ ଦିନକର ତାର ଗୋଟିଏ ପୁଅ ଜନ୍ମ ହେଲା । ପିଲାଟି ଭଲ ରାଶି ନକ୍ଷତ୍ରରେ ଜନ୍ମ ହେଲା, ଜୋତିଷ ହାତ ଦେଖି କହିଲା ଯେ, ଚଉଦ ବରଷ ବୟସ ହେଲେ ସିଏ ରଜାଝିଅକୁ ବାହା ହେବ । ଇମିତି କେତେ ଦିନ ଗଲା । ଦିନକର କଣ ହୋଇଚ ନା, ରଜା ଲୁଚି କରି ସେଇ ଗାଁଙ୍କୁ ଆସିଚନ୍ତି ଦେଖିବାକୁ; ଗାଁର ହାଲ ଚାଲ କଣ ବୋଲି ପଚାରିଲାରୁ ସମସ୍ତେ କହିଲେ, "ଅମ ଗାଁରେ ଗୋଟିଏ ପିଲା ଜନ୍ମ ହୋଇଚ ଯେ, ଜୋତିଷ ହାତ ଦେଖି କହିଛି, ଚଉଦ ବରଷ ବୟସ ହେଲେ ସେ ପିଲାଟି ରଜାଙ୍କ ଝିଅକୁ ବାହା ହେବ ।" ରଜା ଏ କଥା ଶୁଣି ସେ ପିଲା ଉପରେ ମନେ ମନେ ଭାରି ଖପା ହେଲେ, ଆଉ ତା ବାପାକୁ ଯାଇ କହିଲେ, "ତମ ପୁଅଟିକୁ ଆମକୁ ଦିଅ ।" ବାପ ଭାରି ଅମଙ୍ଗ ହେଲାରୁ ରଜା କେତେ ଟଙ୍କା, ସୁନା ଯାଚିଲେ । ସିଏ ତ ବଡ଼ ଦୁଃଖୀ, ଛନାଧିନରେ ଓଳିଏ ଚୁଲି ଜଳେ ନାହିଁ, ଟଙ୍କା ସୁନା ଦେଖି ତାର ମିଥେରେ ଭାରି ଲୋଭ ଜଳିଲା । ପଛକୁ ପୁଅଟିକୁ ଦେଇ ପକେଇବାକୁ ହଁ କଲା ।

ରଜା ପିଲାଟିକୁ ନେଇ ଗୋଟିଏ ସିନ୍ଦୁକରେ ପୂରେଇ ନଈରେ ଭସେଇ ଦେଲେ । ମନେ ମନେ ଭାରି ଆନନ୍ଦ ହୋଇ କହିଲେ, "ଟୋକା, ମୋ ଜେମାର ହାତ ଆଉ ଧରିବୁ ?" ଏଣେ କଣ ହୋଇଚ ନା, ସିନ୍ଦୁକଟି ଭାସି ଭାସି ଯାଇ ଠାଏ କୂଳରେ ଲାଗିଲା । ସିଠି ଗଉଡ଼ ଗାଈ ଚରଉଥିଲା । ସିନ୍ଦୁକଟିକୁ ଦେଖି ଆସି ଫିଟେଇଲା । ଦେଖେ ତ ଦିବ୍ୟସୁନ୍ଦର ପିଲାଟିଏ ଶୋଇଚି । ତାର ତ ପୁଅ ଝିଅ କେହି ନ ଥିଲେ, ପିଲାଟିକି ନେଇ ପୁଅପରି ପାଳିଲା ।

ତେର ବର୍ଷ ବିତିଗଲା । ଧନକର ରଜା ବୁଲି ବୁଲି ଆସି ସେଇ ଗଉଡ଼ ଘରେ ପହଞ୍ଚି ଦେଖନ୍ତି ଯେ, ତାର କେଡ଼େ ସୁନ୍ଦର ପୁଅଟିଏ, ସତେ ଅବା ଗୋଟିଏ ଚାଉଳରେ ଗଢ଼ା । ସେଇଟି କା ପୁଅ ବୋଲି ପଚାରିଲାରୁ ଗଉଡ଼ କହିଲା, "ମଣିମା, ଆଜକୁ ତେର ବରଷ ତଳେ ମୁଁ ଏ ପିଲାଟିକି ନଈରୁ ପାଇଥିଲି । ସିନ୍ଦୁକଟିଏ ଭିତରେ ଭାସି ଭାସି ଆସୁଥିଲା । ଦୁଃଖୀକି ତ ଦଇବ ସାହା; ଫଟେଇ ଦେଖେ ତ ଦିବ୍ୟ-ସୁନ୍ଦର ପିଲାଟିଏ ।" ରଜା ତ ଚତୁର ଲୋକ । ଏ କଥା ଶୁଣିଲା ମାତ୍ରକେ ଜାଣିଲେ ଯେ, ଇଏ ସେଇ ପିଲା । କହିଲେ, "ଦେଖ, ତୋ ପୁଅକୁ ଆମ ରାଣୀଙ୍କ ପାଖକୁ ଖଣ୍ଡେ ଚିଠା ଦେଇ ପଠେଇବା ।" ଗଉଡ଼ ତ ଏତେ ଛନ୍ଦ କପଟ ନ ଜାଣେ, ହଁ କରିଦେଲା । ରଜା ଖଣ୍ଡିଏ ଚିଠା ଲେଖି ପକେଇଲେ । ସିଥିରେ ଲେଖିଲେ, "ଏ ପିଲା ପହଞ୍ଚିଲାକ୍ଷଣି ଏହାକୁ ହାଣି ପକେଇବ ।"

ପିଲାଟି ଚିଠା ଖଣ୍ଡିକ ଧରିକରି ଯାଉଥାଏ, ଖଣ୍ଡେ ଦୂର ଯାଇଛି, ବାଟବଣା ହେଲା ଯେ; କେତେ ଖୋଜିଲା ଆଉ ବାଟ ପାଇଲା ନାହିଁ । ସଞ୍ଜ ବେଳକୁ ଜଙ୍ଗଲ ଭିତରେ ଗୋଟିଏ କୁଡ଼ିଆ ଘର ଦୁଆରେ ଆସି ପହଞ୍ଚିଲା । ବୁଢ଼ୀଟିଏ ଦୁଆର ଜଗି ବସିଥିଲା । କହିଲା, "କିରେ ପୁଅ, ତୁ ଇଠିକି କାହିଁ ଆଇଲୁ ? ଇଏ ତ ଚୋରଙ୍କ ବସାଘର । ଆଇଲେ ତତେ ଆଉ ପ୍ରାଣରେ ରଖିବେଟିକି ?" ପିଲାଟି ତ ଦିନଯାକ ବୁଲି ବୁଲି ହାଲିଆ ହୋଇଥିଲା, କହିଲା, "ଯାହା କରିବେ କରନ୍ତୁ, ମୁଁ ଏଇଠି ଶୋଇଲି ।" ଏହା କହି ଚିଠା ଖଣ୍ଡିକ ପୁଳଟରେ ଖୋସି ଦେଇ ଶୋଇ ପଡ଼ିଲା ।

ଘଡ଼ିଏ ଗଲାରୁ ଚୋରଯାକ ଆସି ପହଞ୍ଚିଲେ । ଦେଖିଲେ, ଦିବ୍ୟ-ସୁନ୍ଦର ପିଲାଟିଏ ଶୋଇଛି ! ଜଣେ ଚୋର ଦବାନ୍ତୁ ଦବାନ୍ତୁ ଚିଠାଖଣ୍ଡିକ

ତା ହାତରେ ପଡ଼ିଲା । ସିଏ ଫିଟେଇ କରି ପଢ଼ିଲା ତ ଇମିତି ଇମିତି ଲେଖା ହୋଇଛି । ଚୋର ଜାଣିଛ ତ ଭାରି ଖଣ୍ଡିଆ । କଲା କଣ ନା, ସେ ଭୂଷା ଖଣ୍ଡିକ ଚିରି ପକେଇଲା । ଆଉ ଖଣ୍ଡେ ଭୂଷା ନେଇଲା ଯେ ସେଥିରେ ଲେଖିଲା, "ଇ ପିଲା ଗଲା ମାତ୍ରେ ଯାକୁ ଜେମାକୁ ଅମର ବାହା କରେଇ ଦବ ।" ଲେଖି ସାରି ଭୂଷା ଖଣ୍ଡିକ ପୁଣି ସେଇଠି ଗୁଳରେ ଖୋସି ଦେଇ ତା ମନ୍ତ୍ରେ ସିଏ ଶୋଇଲା । ଆରଦିନ ସକାଳୁ ପିଲା ଭୂଷା ଧରି ଯାଇ ନଅରରେ ରାଣୀଙ୍କ ପାଖରେ ପହଞ୍ଚିଲା । ରାଣୀ ଭୂଷା ପଢ଼ି ପିଲା ହାତକୁ ଆପଣା ଜେମାକୁ ଟେକି ଦେଲେ । ପିଲାଟି ତ ସାକ୍ଷାତ ରଜାପୁଅ । ଜେମା ଏମନ୍ତ ସୁନ୍ଦର ବର ପାଇ ଭାରି ଆନନ୍ଦରେ ରହିଲା ।

କେତେ ଦିନ ଉତ୍ତାରୁ ରଜା ଆସି ପହଞ୍ଚି ଦେଖନ୍ତି ଯେ, ଇମିତି ଇମିତି କାଣ୍ଡ । ବିଚାରିଲେ, କପାଳରେ ବିଧାତା ଯାହା ଲେଖିଥାଏ ସେ କଥା ନଷ୍ଟ ହୁଏ । ହେଲେ, ତାଙ୍କ ମନଟି ମାନୁଛି କେତେକେ ? ଟୋକାକୁ ଡାକି କହିଲେ, "ସମୁଦ୍ର ଆରପଟେ ପର୍ବତ, ପର୍ବତ ଭିତରେ ଖୋଲ, ଖୋଲ ଭିତରେ ଅଛି ଏକ ଅସୁର ଯେ, ତା ମୁଣ୍ଡରେ ଛଗୋଟି ସୁନା ବାଳ । ସିଏ ସେ ବାଳ ଛଗୋଟି ଆଣିବ, ସିଏ ଏକା ଆମ ଜେମାକୁ ବାହା ହବ ।" ଟୋକା ଇ କଥା ଶୁଣି ଅସୁରଠୁ ସୁନା ବାଳ ଆଣିବାକୁ ଯିବାକୁ ହଁ କଲା ।

ଯାଉ ଯାଉ ଏକ ଗାଁରେ ଯାଇ ପହଞ୍ଚିଲା ଯେ, ସେ ଗାଁଟିରେ କଅଣ ହୋଇଛି ନା, କୂଅଟିଏ ଅଛି । ସେଇ କୂଅରେ ଆଗେ ଗୋଟେ ଝର ପଡ଼ୁଥେ ଯେ, ସିଏ ଯେତେ ପାଣି ନେଲେ ନା କାହିଁକି କୂଅ ଆଉ ଶୁଖେ ନାଇଁ । ହେଲେ, ଏବେ ଅଉ ସେ ଝର ବୋହୁ ନାଇଁ । ଗାଁ ଲୋକଙ୍କ

ସେ ଠୋକାକୁ ଦୁ' ବଳଦ ସୁନା ଯାଚିଲେ । କହିଲେ, "ଆମ କୂଅରୁ ଝର କାହିଁକି ମରିଗଲା, କାମ ତ ପୁର୍ଣ୍ଣ ଫିଟିବ ତାର ବ୍ୟବସ୍ଥା କରିଦେଇ ଦେଇଯାଅ ।" ଠୋକା କହିଲା, "ଅଛି, ମୁଁ ଫେରିଲାବେଳେ କହିଯିବି ।" ଯା କହି ଯାଇ ପୁଣି ଆଉ ଏକ ଗାଁରେ ପହଞ୍ଚିଲା । ସେ ଗାଁରେ କଅଣ ହୋଇଛି ନା, ଗୋଟିଏ ଗଛ ଯେ ଯୋଉଥିରେ ଆଗେ ଫୁଲ ଫଳ ଲେଲନ୍ତ ଦେଉଥିଲା, ଗଛ ଭାଙ୍ଗି ପଡ଼ୁଥିଲା । ସେଥିଲ ଏବେକୁ ଆଉ ଗାଛରେ ପବନ ହିଁ ହେଲେ ଦେଖା ନାହିଁ । କଣ କଲେ ଗଛ ଫେରେ ଫଳିବ ବୋଲି ଗାଁ ଲୋକେ ପଚାରିଲାରୁ ଠୋକା କହିଲା, " ଅଛି, ଫେରିଲାବେଳେ କହିଯିବି ।" ଯା କହି ସେଠୁ ଗଲା । ଯାଉ ଯାଉ ବାଟରେ ପୁଣି ସମୁଦ୍ର ପଡ଼ିଲା । ନାଉରୀ ପଚାରିଲା, "କହ ଦେଖି ଭଲା, ମୁଁ ତ ଆସ ବୁଢ଼ା ହେଲି, କେତେ ସେମିତି ନାଆ ବୋହୁଛି । କଅଣ କଲେ ମୋ ଦଶା ପାର ଯାଇବ ?" "ଅଛି, ମୁଁ ଫେରିଲେ ମତେ ପଚାରିବ" ବୋଲି ଠୋକା କହିଗଲା ।

ସମୁଦ୍ର ପାର ହୋଇ ଯାଇ ଏକ ପର୍ବତ ତଳେ ପହଞ୍ଚିଲା । ଦେଖେ ତ, ଖୋଲ ଭିତରେ କାହାର ଦିବ୍ୟ ସୁନ୍ଦର ଘରଟିଏ । ଗଲା-ବେଳକୁ ଅସୁର ଯାଇଛି ଚରିବାକୁ । ତା ମା ବସିଥିଲା ସେ, ଏ ପିଲାକୁ ଦେଖି ଜିଭ କାମୁଡ଼ି ପକାଇଲା । କହିଲା, "କାହିଁକି ଆଇଲୁ ରେ ପୁଅ ? ଅସୁର ଆଇଲେ ତ ତୋତେ ଖାଇ ଦେବ ।" ପିଲା କହିଲା, " ମୁଁ ପରା ସେଇ ଅସୁର ମୁଣ୍ଡରୁ ସୁନା ବାଳ ତିନୋଟି ନେବି ବୋଲି ଆସିଛି । ନା ଥିଲେ କଣ ଏଠୁ ଉଠିବି ?" ବୁଢ଼ୀ ଅସୁରୁଣୀ ପିଲାକୁ ବସେଇ କହିଲା ଯେ, ତାକୁ ବାଳ ତିନୋଟି ଆଣିଦେବ । ସେଇଠୁ ଏ ପିଲାର ହୁବ ପାଇଗଲା, କହିଲା, " ମୋର ତ ଆଉ କେତୋଟି କଥା ଅଛି ।

କହିଲୁ ଦେଖି ବୁଢ଼ି, ସେ ଗାଆଁ କୁଅରୁ ଝର କାହିଁକି ଶୁଖି ଯାଉଛି, ମୋ ଆର ଗାଁ ଚଣକ ଗଛରେ ଫଳ କାହିଁକି ଝଡ଼ୁ ନେଇଁ, ଆଉ, କଅଣ କଲେ ସେ ନାଅ ସ୍ୱଦଶା ମେଣ୍ଟିବ ?" ବୁଢ଼ୀ ଅସୁରୁଣୀ କହିଲା, "କହରେ ପୁଅ, ମୁଁ ଅସୁର ମୁଣ୍ଡରୁ ବାଳ ଓପାଡ଼ିଲାବେଳେ ସେ କଅଣ କହିବ ଶୁଣିବୁ ।" ଏହା କହି ପଲଙ୍କିରେ ଶୁଆଁ ଦେଲା ଯେ, ସିଏ ଗୋଟିଏ ପିମ୍ପୁଡ଼ି ହୋଇଗଲା । ସେଇଠୁ ତାକୁ ଅପଣା ଲୁଗା କାନିରେ ଲୁଚେଇ କରି ରଖିଲା ।

ସଞ୍ଜ ବୁଡ଼ିଲାରୁ ଅସୁର ଆସି ପହଞ୍ଚିଲା । ଘର ଭିତରେ ପଶିଲା କ୍ଷିଣି ଖାଲି ଗନ୍ଧ ପଚାରିଲା, ଆଉ କହିଲା, "ମା ଲୋ ମା, ମଣିଷ ମଉଁସ ବାସନାରେ ଘର ତ ମହକି ଯାଉଛି ଆଜ ।" ପଛକୁ ବୁଢ଼ୀ ଅସୁରୁଣୀ ଗାଳି ଦବାକୁ ଲାଗି ପଡ଼ିଲା । ନିଦ ଘୋଡ଼ି ନିଦ ଲାଗି ଗଲାରୁ ଯେତେବେଳେ ସେ ଘୁଙ୍ଗୁଡ଼ି ମାରିଲା, ବୁଢ଼ୀ ଅସୁରୁଣୀ ଗୋଟିଏ ଧୂଳା ବାଳ ଧରି ଓପାଡ଼ି ଅଣିଲା । ଅସୁର ନିଦ ଭାଙ୍ଗି ଗଲା । ଗାଳି ଦେଲାରୁ ବୁଢ଼ୀ ଅସୁରୁଣୀ କହିଲା, "ଅରେ ପୁଅ, କଣ ସପନ ଦେଖିଲି ଯେ ନିଦ-ବାଉଳାରେ ତୋ ବାଳ ଛିଡ଼ି ଦେଲି ସିନା ! କଣ ସପନ ଦେଖିଲି କି, ଏକ ଗାଁରେ ଗୋଟିଏ କୁଅ ଯେ, ସେ କୁଅରୁ ଝର ଶୁଖି ଯାଉଛି । କାହିଁକି ଇମିତି ହେଉଛି ରେ ପୁଅ ?" ଅସୁର କହିଲା, ଝର ତଳେ ପଥରଟାରେ ବେଙ୍ଗ ବସିଛି, ତାକୁ ନ ମାରିଲେ କଣ ଝର ଫିଟିବ ?"

ଏହା କହି ଅସୁର ଫେରେ ଶୋଇ ପଡ଼ି ଘୁଙ୍ଗୁଡ଼ି ମାରିଲା; ବୁଢ଼ୀ ଅସୁରୁଣୀ ପୁଣି ଆଉ ଗୋଟିଏ ବାଳ ଧରି ଓପାଡ଼ି ଅଣିଲାରୁ ସିଏ ଉଠି ତାକୁ ଗାଳି ବକିଲା । ତହୁଁ ବୁଢ଼ୀ ଅସୁରୁଣୀ କହିଲା, "ଅରେ ପୁଅ, ନିଦ-

ଶୋଇଲାରେ ସିନା ତୋ ମୁଣ୍ଡରେ ହାତ ଦେଉଥିଲି । ମୁଁ କଣ ସପନ ଦେଖିଲି କି, ଏଇ ଗାଆଁରେ ଗୋଟିଏ ପଣସ ଗଛ ଯେ, ଦିନେରେ ଆଗେ ଫୁଲ ଫଳ ଭଲରେ ଦେଉଥିଲା । ଏବେ ଆଉ ସେ ଗଛରେ ପଣସଟିଏ ସୁଦ୍ଧା ଫଳୁ ନାହିଁ । କାହିଁକି ଏମିତି ହେଉଛି କହିଲୁ ରେ ପୁଅ ?" ଅସୁର କହିଲା, "ଚେରଯାକ ତ ମୂଷା କାଟି ପକାଉଛି, ତାକୁ ମାରି ନ ଦେଲେ କିମିତି ଫଳିବ ?"

ଏହା କହି ପୁଣି ଶୋଇ ପଡ଼ନ୍ତେ ବୁଢ଼ୀ ଅସୁରୁଣୀ ଆଉ ଗୋଟିଏ ବାଳ ଓପାଡ଼ି ଦେଲା । ଏଥର ଅସୁର ରାଗରେ ଉଠି ଠିଆ ହୋଇ ପଡ଼ିଲା, ଆଉ ଖୁବ ତର୍ଜନ ଗର୍ଜନ କଲା । ଶେଷକୁ ବୁଢ଼ୀ ବୁଝେଇଲାରୁ ବୁଝିଗଲା । ସେଠୁ ବୁଢ଼ୀ କହନ୍ତି, "କଣ ହେଲା ନା, ମୁଁ ସପନ ଦେଖିଲି ଯେ, ସମୁଦ୍ର ଏ ପାଖକୁ ସେ ପାଖ ଗୋଟେ ନାଉରୀ କେବଳ ନାଆ ବାହୁଛି ତାକୁ କଣ କେଉଁଟି ଏ ବନ୍ଧନ କରି ରଖିଛି ?" ଅସୁର କହିଲା, "ସିଏ ଏକ ଚୋର । ଏତେ ଲୋକଙ୍କୁ ତ ବୋହିକରି ନେଉଛି, ଜଣକ ହାତକୁ କାତ ବଢ଼େଇ ଦେଲେ ଯାଆନ୍ତା ।" ଏହା କହି ଅସୁର ନିଘୋଡ଼ ନିଦରେ ଶୋଇ ପଡ଼ିଲେ, ଆଉ ଦିନ ହେଲେ ପହରକ ହେଲା ଯାଇ ଉଠିଲା ।

ଏ ପିଲା ଏଣେ ଅସୁରୁଣୀଠୁ ଶୁଣି ଗଲା ତିନୋଟିଯାକ କଥା ଆସି ସମୁଦ୍ର କୂଳରେ ପହଞ୍ଚିଲା । ନାଉରୀ ପାର କରି ସାରିଲାରୁ କହିଲା, "ତୁ ତ ଏତେ ଲୋକଙ୍କୁ ପାର କରୁଛୁ, ଜଣକୁ କାତ ଧରେଇ ଦେଲେ ତୋ ଦଶା ମେଣ୍ଟିବ ।" ତହୁଁ ସେ ଗାଆଁକୁ ଆସିଲାରୁ ଲୋକେ ପଣସ ଗଛ କଥା ପଚାରିଲେ । ପିଲା କହିଲା, "ମୂଳ ତ ମୂଷା କାଟି ପକାଉଛି, ତାକୁ ମାରି ଦିଅ ।" ସେ ଗାଆଁରୁ ଠିକ୍ ଠାକୁର ଧରି ଆସି ଅଉ

ଗାଆଁରେ ପହଞ୍ଚିଲା । ଲୋକେ ସେଇମିତ ତାଙ୍କ କୁଅରୁ ଝର ଶୁଣି ଯିବାର ତଥ୍ୟ ପଚାରିଲେ । ସିଏ ଉପାୟ ବତାଇ ଦେଇ ଦୁଇ ବଳଦ ସୁନା ଅସରପି ଧରି ଆଇଲା ।

ଘରକୁ ଆସି ରଜାଙ୍କୁ ସୁନା ବାଳ ଭେଟି ଦେଲା । ରଜା ଝୋଟାର ମାଧୁର୍ଯ୍ୟ ଦେଖି ଆନନ୍ଦିତ ହେଲେ; ତା ହାତକୁ କନ୍ୟାକୁ ଟେକି ଦେଲେ । ଆଉ, ପିଲା ଯୋଗେ ଠିକା ସୁନା ଆଣିଥିବା ତାକୁ ଦେଖି ତାଙ୍କର ଖୁବ ଲୋଭ ବଳିଲା । କୋଉଠୁ ଆଣିଛନ୍ତି ପଚାରିବାରୁ ସିଏ କହିଲା, "ସମୁଦ୍ର ସେ ପାରରେ ଗଦା ହୋଇଛି, ଯାଇଲେ ଆଣି ଯେତେ ଇଚ୍ଛା । ରଜା ଯାଇ ସମୁଦ୍ର କୂଳରେ ପହଞ୍ଚି ଡଙ୍ଗାରେ ଗୋଡ଼ ଦେଇଚନ୍ତି କି ନାହିଁ, ନାଉରୀ କାଠ ଆଣି ହାତରେ ଧରେଇ ଦେଇ ତା ଜାଗାରେ ପଳେଇଗଲା । ରଜା ସେଇ ଦିନଠୁ ନାଆ ବାହିବାକୁ ଲାଗିଲେ । ସେ ଏ ଘାଟରେ ବର୍ଷ ବିତେଇ ଗଲା । ମୁଁ ଗଳ୍ପକୁ କଥା ନ କହିଲି ।





## ଟିପେ ଭର ପୁଅ

**ଗୋଟିଏ** ଗାଁର ମଧୁଆ ଲୋକଟିଏ ଥାଏ ଯେ, ସିଏ ଦିନୁ ଦିନେ ବଣରୁ କାଠ ଭାଙ୍ଗି ଆଣି ବିକିଲେ ଖାଏ। ତା ଘରକୁ ସିଏ, ଆଉ ତା ଭାରିଯା, ଦୁହେଁ। ଦିନକର ପୁତ୍ରଭାଗ ହେତୁରେ କଣ ହେଉଚି ନା, ଦୁହେଁଯାକ ଚାଳିମୁଣ୍ଡରେ ବସିଚନ୍ତି, ଭାରିଯା ପୋଇ ଅଳ୍ପଅଟରେ ଚର୍ଚ୍ଚି ଖୁଣ୍ଟା କାଟୁଚି, ଗିରସ୍ତ କହିଲା—"ଅହା, ଘରଟି ଅମର କେଡେ ନିଘୋଡିଆ ଲାଗୁଚି! କୋଳକୁ ଦେଇ ଗୋଟିଏ ଥିଲେ ସିଏ ସବୁ ଦେଖନ୍ତା ବୁଲୁଥାଆନ୍ତା, ଆମକୁ ଆଉ ଦୁଃଖ ବାଧୁନଥାନ୍ତା।" ଭାରିଯା ସେଇଠୁ କହିଲା—"ସତ କହିଲ, ତା ହେଇଥିଲେ କି ମୁଁ ଏତେ ଶ୍ରାନ୍ତିମାନିଆ ହୁଅନ୍ତି? ମତେ ବଡ଼ ଉମୁଚୁମୁକ ଲାଗୁଚି। ପୁଅଟିଏ ହୁଅନ୍ତା ଯେ ସିଏ ଅଙ୍ଗ ଦାନ ହୁଅନ୍ତା; ମୋର ଏଇ ଟିପେ ଅଳ ନଡ଼ ହୁଅନ୍ତା ନାହିଁ। ମୁଁ ତାକୁ ଖୁଆନ୍ତି, ପିଆନ୍ତି, ପାଳନ୍ତି। ଆମେ ସୁଖରେ ରହନ୍ତେ।" ପରକୁ ପର କେତେ ଦିନ ଗଲାରୁ ତାଙ୍କର ଗୋଟିଏ ପୁଅ ହେଲା ଯେ, ସିଏ ଟିପେ ଲମ୍ବ। ବାପ ମାଆ ଦେଖି ଭାରି ଆନନ୍ଦ ହେଲେ, ଦୁହେଁଯାକ ଆଦରରେ ପୁଅ ନାଁ ଦେଲେ 'ଟିପ'।

ଟିପର ବୟସ ହେଲା, ମାତ୍ର ସିଏ ଆଉ ବଢ଼ିଲା ନାହିଁ। ଯେତେ ଖୁଆଇଲେ, ପିଆଇଲେ, ସିଏ ସେମିତି ରହିଲା। ଦିନକୁ ଦିନ ଟିପର ବୁଦ୍ଧି ହେଲା, ଚେଲିକ, ଚୁଲବୁଲ, ଘର ଚାହାଳି କଲା—ପାଞ୍ଚକଥା ଜାଣିଲା। ଦିନକର କଣ ହେଲା ନା, ଟିପର ବାପ କାଠପାଇଁ ବଣକୁ ଯିବାକୁ ବାହାରିଲା। ମାତ୍ର ସେ ତ ଏକୁଟିଆ ଲୋକ, 'କହିଲା,

“ଆଜ ଗୋଟିଏ କାମ ଅ'ଆନ୍ତା ବୋଇଲେ ମୋ ପଛରେ ଶଗଡ଼ ଓଟାରି ନିଅନ୍ତା; ମୁଁ ଆଗରେ ଯାଆନ୍ତି ଭାଇ ।” ଟିପ ସେଠୁ ବାପକୁ କହିଲା—“ବାପା, ମୁଁ ନେବି । ତମେ ଯେଉଁଠି କହିବ ସେଇଠି ପହଞ୍ଚାଇ ଦେବି ।” ତା କଥା ଶୁଣି ବାପ ଠୋ ଠୋ ହସି କରି କହିଲା—“ତୁ ପାରିବୁ କି ରେ ! ତୁ ତ ଶଗଡ଼ ଉପରକୁ ଉଠି ପାରିବୁ ନାହିଁ !” ଟିପ କହିଲା—“ନାହିଁ ବାପା, ମୁଁ ପାରିବି । ମାଆ ଦେଉଛ ଶଗଡ଼ଟି ଯୋଚି ଦେବ, ଆଉ ମତେ ନେଇ ବଳଦ କାନ-ମୁଣ୍ଡାରେ ବସେଇ ଦେବ, ତେବେ ମୁଁ ସେଇଠି ବସି ଶଗଡ଼ ଯୁଆଳେ ପିଠାକୁ ହାତ ବଳଦକୁ କହି କହି ଦେଉଥିବି ।” ବାପ କହିଲା—“ହଉ, କିମିତି କରୁଚୁ ଏବେ ଦେଖିବା ।”

ବାପ ଆଗରେ ବାହାର ଗଳିରୁ ମାଆ କଅଁଶ କଲା ନା, ଶଗଡ଼ଟି ଯୋଚି ଦେଇ ଟିପକୁ ନେଇ ବଳଦ କାନରେ ବସେଇ ଦେଲା । ଟିପ ସେଠି ବସି ବଳଦକୁ “ଓଁ—ଓଁ—ଡ଼ି” କରୁଥାଏ, ଆଉ ଯୁଆଳେ ପିଠାକୁ ହାତ କାହି ଦେଉଥାଏ । ବଳଦ ସବୁଦିନ ଯିମିତି ଶଗଡ଼ ଟାଣନ୍ତି, ସେଦିନ ସିମିତି ଟାଣିଲେ; ତାଙ୍କୁ ତାଙ୍କ ବଡ଼ପଣ ଓହ୍ଲେଇଲା ପରି ଲାଗିଲା । କେତେ ବାଟ ଗଲାରୁ ଶଗଡ଼ ଛାଡ଼ି ଧାଇଁଲା । ଟିପ ସେଠୁ ଶଗଡ଼ ଟିଗୋଟିଏ ଗୋଟିଏ ନବାକୁ ବଳଦଙ୍କୁ ପାଟି କରି ‘ହ ହ’ କଲା । ବାଟରେ ଦି’ ଜଣ ଲୋକ ଯାଉଥିଲେ ସେ, ସେମାନେ ଟିପର ‘ହ’ ‘ହ’ ପାଟି ଶୁଣିଲେ । ଜଣେ ସେଠୁ ଜଣକୁ କହିଲା—“ଇଏ କିମିତି କଥା, କାହା ଶଗଡ଼ଟା ତ ଯାଉଚି, ଆଉ ବଳଦକୁ ପାଟି କରି ଓହଉଚି କିଏ ?” ଆର ଜଣକ କହିଲା—“ଇଏ ତ ବଡ଼ ଆଶ୍ଚର୍ଯ୍ୟ କଥା ! ଚାଲ ଆମେ ଏଇ ଶଗଡ଼ ପଛେ ପଛେ

ଯିବା ଯେ, କୁଆଡ଼ାକୁ ଯିବ ଦେଖିବା ।" ଏହେଁ ଯାକ ସେମିତି ଶଗଡ଼ ପଛେ ପଛେ ଗଲେ । ଟିପର ଲାଞ୍ଜ ଛପାଉଠି ଥିଲା, ଶଗଡ଼ ଯେଉଁଠି ଯାଇ ପହଞ୍ଚିଲା । ଟିପ ବାପକୁ ଦେଖି ଚାଳି କରି କହିଲା—"ଦେଖ ବାପା ! ମୁଁ କେମିତି ଶଗଡ଼ ଘେନି ଆସିଲି । ମତେ ଓହ୍ଲାଇ ଦେ ।" ବାପ ସେଠୁ ଚଢ଼ିବାର ହାତରେ ବଳଦକୁ ଧରି ଶାଳିବ ହାତରେ ଟିପକୁ ଓହ୍ଲାଇ ଦେଲା । ପୁଣି ସେ ପାଳ ତଳେ ପଟ କରି ଦେଇ ତାକୁ ତା ଉପରେ ବସାଇ ଦେଲା । ଟିପ ଭାରି ଖୁସି ହୋଇ ବସିଲା । ଏଏ ଯୋଉ ଦୁ'ଜଣ ଲୋକ ଯାଇଥିଲେ, ଏ କଥା ଦେଖି ଭାରି ଆଶ୍ଚର୍ଯ୍ୟ ହେଲେ । ଜଣେ ସେଠୁ ଜଣକୁ କହିଲା—"ଏଏ ପିଲାଟିକି ଯେବେ ଆମେ ନେଅନ୍ତେ, ଗାଁ ଗାଁ ବୁଲାଇ ବହୁତ ରୋଜଗାର କରନ୍ତେ । ଚାଲ, ଆମେ ଏହାକୁ କିଣି କରି ନେଇ ଯିବା ।" ତହୁଁ ସେମାନେ ଟିପର ବାପକୁ ପଚାରିଲେ—"ହଇ ହେ ଭାଇ, ଏ ପିଲାଟିକି ତମେ ବିକିବ କି ? କେତେ ହେଲେ ଦେବ ?" ଟିପର ବାପ କହିଲା—"ଇଏ କେମିତି କଥା କହୁଚ, ମୋ ଛୁଆର ପଞ୍ଚାଲକ୍ଷ ମୁଁ ବିକି ଦେବି ? ସୁନା ରୂପା ଗଦା କଲେ ବି ମୁଁ ତାକୁ ଦେବି ନାହିଁ ।" ଲୋକ ଦୁହେଁ ସେତେବେଳେ ଅନେକ ଟଙ୍କା ସୁନା ଦବାକୁ କହିଲେ, ଟିପ ତା ଶୁଣି ଭାରି ଖୁସି ହେଲା—ଖୁରୁଖୁରୁ ହୋଇ ବାପାର ଅଣ୍ଟା ଉପରକୁ ଚଢ଼ିଗଲା । ସେଠୁ ତା କାନ ପାଖରେ ବସି ଭୁନି ଭୁନି କରି କହିଲା—"ବାପା, କିଛି ଭୟ କର ନାହିଁ, ତାଙ୍କଠୁ ଟଙ୍କା ରଖ, ମତେ ଦିଅ ନାହିଁ; ମୁଁ ତାଙ୍କ ପାଖରୁ ବେଗେ ଫେରି ଆସିବି ଯେ ।"

ବାପ ବଡ଼ କଷ୍ଟରେ ଶେଷକୁ ଅନେକ ସୁନା ରୂପା ପାଇ ଟିପକୁ ବିକି ଦେଲା । ଟିପ ବାପାକୁ ଦଣ୍ଡବତ ହୋଇ ଏ ଦୁ'ଜଣଙ୍କ ପାଖକୁ

ଅସିଲାରୁ ଏ ପଚାରିଲେ—"ଟିପ, ତମେ କୁ'ଠି ବସିବ ?" ଟିପ କହିଲା—"ମତେ ତମ ଡାଲାର ଉପରେ ବସେଇ ଦିଅ । ସେଠି ମତେ ବଡ଼ ସୁଖ ହବ, ମୁଁ ଉପରେ ବସି ସବୁ ଦେଖୁଥିବ ଏଣେ ତେଣେ ବୁଲୁଥିବ ।" ଟିପକୁ ଡାଲାର ଉପରେ ବସେଇ ଦେଇ ବାଟୋଇ ଦି'ଜଣ ଚାଲିଲେ । ଏଇମିତି କେତେ ବାଟ ଗଲେ । ଯାଉ ଯାଉ ବେଳ ବୁଡ଼ିଲା । ଟିପ ଡାଲାର ଉପରେ ଥାଇ କହିଲା—"ଏ ଭାଇ, ମତେ ବୁଲି ବୁଲି ବଡ଼ ହାଲିଆ ଲାଗିଲାଣି, ତଳକୁ ଟିକିଏ ଓହ୍ଲେଇ ଦିଅ ।"

ଲୋକଟି ବାଟ ଭିତରେ ଡାଲାରଟିକି ଥୋଇ ଦେଲା; ଟିପକୁ ଓହ୍ଲେଇ ଦେଲା । ସେଠି କଅଣ ହେଇଥିଲା ନା, ଗୋଟେ ଘଞ୍ଚ କିଆବଣ ଥିଲା ଯେ, ସେଥିରେ ବଡ଼ ବଡ଼ ଗଛ ଉଠିଥିଲା । ଟିପ ସେଇ କିଆବଣ ଭିତରରେ ଭାରି ଖୁସି ହେଇ ଏଣେ ତେଣେ ଧାଇଁଲା । ସେଇ କିଆବଣ ଭିତରେ ଗୋଟେ ବଡ଼ ମୂଷାଗାତ ଥିଲା । ଟିପ ଧାଉଁ ଧାଉଁ ସେଇ ଗାତ ଭିତରକୁ ଚାଲି କହି ଗଲା ପଡ଼ିଲା । ଗଲା ପଡ଼ିଲାରୁ ପାଟିକରି ଡାକିଲା—"ଗଲି ହୋ ଭାଇ ଗଲି, ଧାଇଁ ଆସ, ଧାଇଁ ଆସ, ଗାତରେ ପଡ଼ିଗଲି ।" ଏ ହଉଁ ଯିମିତି ଶୁଣିଲେ ସିମିତି ଧାଇଁଲେ । କେତେଥର ବାହୁମୂଳି ଗାତ ଭିତରକୁ ପୂରେଇଲେ, ହେଲେ, ଟିପ ଆଉ ବାହାରିଲା ନାହିଁ । ଭିତରକୁ ଭିତରକୁ ପଶିଯାଇ କୁଆଡ଼େ ଲୁଚିକରି ରହିଗଲା । ବାଟୋଇ ଦି'ଜଣ ଆଉ କଣ କରନ୍ତେ କି, ବେଶି ଅନ୍ଧାର ହେଇ ଗଲାରୁ ବାଟେ ବାଟେ ଗୋଟିଏ ଗୋଟିଏ ଫେରିଗଲେ ।

ଟିପ ଜାଣିଲା, ସେମାନେ ଚାଲି ଗଲେଣି; ସେଠୁ ଉପରକୁ ଆସି ଭାବିଲା, "ଓହୋ, ଜୀଇଗଲି । ଏ ଠେକା କିଆବଣରେ ପଡ଼ିଲେ କି

ମଣିଷ ଜୀବ ? ଦଇବ ଯୋଗରୁ ମୁଁ ଟେକା ଛାଡ଼ ଉପରୁ ପଡ଼ନ, ପଡ଼ିଥିଲେ ତ ମୋ ବେକୁଟି ଖଣ୍ଡ ଯାଇଥାନ୍ତା ।”

ଟିପ ସେଠୁ ଅସୁ ଅସୁ ଦେଖିଲା, ସେହି କିଆସିରେ ଅଉ ଗୋଟେ ବଡ଼ କଙ୍କଡ଼ାଗାତ ଅଛି । ହିଏ ସେଠୁ ଯାଇ ସେଇ ଗାତ ଭିତରେ ନାଖୋଡ଼ ନଦରେ ଶୋଇ ପଡ଼ିଲା । ସେହି ସମୟକୁ ଦୁ’ଜଣ ଚୋର ସେ ବାଟେ ଯାଉଥିଲେ । ସେଥିରୁ ଜଣେ ଅଉ ଜଣକୁ କହିଲା, “ଭାଇ, ସେ ସାଧବ ଘରୁ କମିତ ଚୋରେଇବା ?” ଟିପ ତଳେ ଗାତ ଭିତରେ ଥାଇ କହିଲା, “ମୁଁ ବତେଇ ଦେବି ।” ଚୋର ମଣିଷ-ଭୁଣ୍ଡ ଶୁଣି ଭାବିଲେ, “ଏ କଣ, ଏ ତ ମଣିଷ ପାଟି ।” ଭୟରେ ସେ କାଠ ପରି ହୋଇ ଗଲେ । ଟିପ କହିଲା, “ମତେ ତମେ ସାଙ୍ଗରେ ନିଅ; ସାଧବ ଘରୁ କମିତ ଚୋରି କରିବ, ମୁଁ ବତେଇ ଦେବି ।” ପାଟି ଶୁଣି ଚୋରମାନେ କହିଲେ, “ତମେ କିଏ, କୁଆଡ଼ି ଅଛ ?” ଟିପ କହିଲା, “ମୋ ଭୁଣ୍ଡ ବାରିକରି ତଳେ ଖୋଜ ।” ସେମାନେ ସେଠୁ ତଳେ ଖୋଜ ଖୋଜ କେତେ ବେଳକୁ ଟିପକୁ ପାଇଲେ । ଟିପ ତ ଏତିକି ଛୋଟିଆଟିଏ, ତାଙ୍କ ମନକୁ ପାଇଲା ନାହିଁ; ସେମାନେ କହିଲେ, “ତୁ ତ ଏତିକି ଟିକେ ହେଇଚୁ, ଆମପାଇଁ ତୁ କଣ କରିବୁ ?” ଟିପ କହିଲା, “ମୁଁ ତ ପଞ୍ଜରା କାଠିବାଟେ ଗଳି କରି ସାଧବ ଘରକୁ ପଶିଯିବି, ଅଉ ତମେ ଯାହା କହିବ ତମକୁ ବଢ଼େଇ ଦେବି ।” ଟିପର ଏ କଥା ଶୁଣି ସେମାନେ ଭାରି ଅନନ୍ଦଚିତ୍ତ ହୋଇ ତାକୁ ସାଙ୍ଗରେ ନେଲେ ।

ସାଧବଘର ଦୁଆରକୁ ଅସିଲାରୁ ଟିପ ପଞ୍ଜରା ବାଟେ ଘର ଭିତରକୁ ପଶିଗଲା । ସେଠି ଘର ଭିତରେ ରହି ତା ତଳେ ବଳେ

ପାଟି କରି ଡାକିଲା, "ହଇ ହେ ଭାଇ, ହଇ ହେ ଭାଇ, ଘରେ ଯାହା ଅଛି ତା କଣ ତମେ ସବୁ ନେବ?" ତା ପାଟି ଶୁଣି ଚୋର ଦୁହେଁ ଭାରି ଭୟରେ ତାକୁ କହିଲେ, "ଚୁନ ଚୁନ କହ, କିଏ ଶୁଣିଲେ ଉଠିବ।" ସତେ ଯିମିତି ଟିପ କାଲା, ତାକୁ ଶୁଭୁନି, ସେ ନ ଶୁଣିଲା ପରି ହୋଇ ପାଟି କରି କହିଲା, "ତମେ କେତେ ନେବ କହୁନା କାହିଁକି? ଯାହା ଅଛି କଣ ସବୁ ଦେବି?" ତା ଅଗପାଖ ଘରେ ସାଧବ ଘରର ହଳିଆ ଶୋଇଥିଲା । ସେ ଏ ପାଟି ଶୁଣି ଶେଯରୁ ଉଠି କାନେଇଲା । ଚୋର ଏଣେ ଭୟରେ ଥରିଲେଣି । କିଏ ଉଠିବ ବୋଲି ଧାଇଁ ଧାଇଁ ପଳେଇଲେ । ଫେରେ ଥିର୍‌ ଥିର୍‌ ଫେର ଆସି ଟିପକୁ ଚୁନ ଚୁନ କରି କହିଲେ, "ଆଉ ଯିମିତି କଉତୁକ ହୋ ନା, ସୁନାରୁପା କଣ ଅଛି ଏ ପାଖକୁ ଫିଙ୍ଗି ଦେ ।" ଟିପ ସେଇଠୁ ଅଉରି ପାଟି କରି କହିଲା, "ହଉ, ତେବେ ସେପାଖେ ହାତ ବଢ଼ାଅ, ମୁଁ ଦଉଛି ।" ହଳିଆ ଏଥର ଭଲକରି ଶୁଣି ପାରିଲା । ସେ ତରତର ହୋଇ ଶେଯରୁ ଉଠି ଧାଇଁଲା । ତା ଦେଖି ଚୋରମାନେ ଛାଡ଼ି ପଳେଇଲେ । ହଳିଆ ଅନ୍ଧାରରେ ଆଉ କଣ ଦେଖିବ, ଏଣେ ତେଣେ ଗୁହାଁଳିଲା, ସେଠୁ ଆଲୁଅ ଆଣିବା ପେଇଁ ଗଲା । ଟିପ ସୁଆ ଭିତରେ କଣ କଲା ନା, ଧାଇଁ ଧାଇଁ ଯାଇ ଯୋଉ ଘରେ ଗୋରୁ ଖାଇବା ପେଇଁ ଘାସ ପାଳ ଥାଏ, ସେଇ ଘରେ ପଶିଗଲା । ହଳିଆ ଆଲୁଅ ଧରି ଆସି ଚାରିକଣ ଯାକ ଖୋଜିଲା—କାହାକୁ ଦେଖିଲା ନାହିଁ । ତାକୁ ସବୁ ସପନ ପରି ଲାଗିଲା । ସେ ଯାଇ ପୁଣି ସେ ଘରେ ଶୋଇପଡ଼ିଲା । ଏଣେ ଟିପ କଣ କଲା ନା, ପାଳଗୋଛା ଉପରେ ଚଢ଼ି ମହାମଉଜରେ ସେଠି ଶୋଇଲା । ଭାବୁଥିଲା, "କାଲି ସକାଳୁ ଖରା ପଡ଼ିଲେ ଗୋଟିଏ ଗୋଟିଏ ଘରକୁ ଯିବ ଭାଇ ।" ମାତ୍ର ତା କପାଳରେ ତ ହଟହଟା ହେବାକୁ ଅଛି, ସିଏ କିମିତି ଭଲରେ ଘରକୁ ଯାଆନ୍ତା ? ରାତି ପାହୁ ନ ପାହୁଣୁ

ମାଲିଅ ଉଠିଲା ଯେ ଗାଈକୁ ଖୁଆଇବ ବୋଲି, ସେଇ ପାଳରୁ କୁଣ୍ଡେ ନେଇ ଗୁହାଣିରେ ମଡ଼େଇ ଦେଲା । ସେ ପାଳ ଭିତରେ ଟିପୁଟି ନିଘୋଡ଼ ନିଦରେ ଶୋଇଥିଲା । ଟିପ ଏ କଥା ଆଉ କିଛି ଜାଣେ ନାହିଁ । ସିଏ ଗୁହାଣି ଭିତରେ ପଡ଼ି କିମିତି ଶୋଇଛି । ଦିନଯାକ ନ ଖାଇ ତ ଗାଈଟି ଭୋକ କରୁଥିଲା, ସିଏ 'ମାସୁ' 'ମାସୁ' କରି ପାଳ ଖାଇ ଦେଇଗଲା । ଟିପର ନିଦ ଭାଙ୍ଗିଲା ବେଳକୁ କଣ ହେଲାଣି ନା, ପୁଳେ ପାଳ ସାଙ୍ଗରେ ଗାଈ ତାକୁ ପାଟି ଭିତରକୁ ନେଇଗଲାଣି । ଟିପ ଏ କଥା ଦେଖି ତା ହଂସା ଉଡ଼ିଗଲା । ସେ ମହାପ୍ରଭୁଙ୍କୁ ଜଣେଇଲା, "ହେ ମହାପ୍ରଭୁ, ଏଥିରୁ ମତେ ରଖ ।" ହେଲେ, ତା କପାଳ ଘଲଖ ଥିଲା । ଗାଈ ତାକୁ ନ ଚୋବେଇ ଗୋଟା ପଧିଅ ଗିଳି ଦେଲା । ଟିପ ତହୁଁ ଥିର୍ ହୋଇ ତୋଟି ବାଟେ ପେଟ ଭିତରକୁ ପଶିଗଲା । ଗାଈ ପେଟ ଭିତରଟାଯାକ ଘ ଅନ୍ଧାର, ତାକୁ କିଛି ଭଲ ଲାଗିଲା ନାହିଁ । ସିଏ ଭାରି ବିରକ୍ତ ହୋଇ କହିଲା, "କେମିତି ଘରଟେ କିଏ କଲା ଯେ ଆଲୁଅ ଅସିବାକୁ ଫାଙ୍କଟେ ଚପେଇ ପାରିଲା ନାହିଁ ? ତା ନ କରି କଳତାଟିଏ ଜାଲି ଦେଇଥିଲେ ତ ଚଳନ୍ତା ।"

ଟିପ ଗାଈ ପାଟିରୁ ବର୍ତ୍ତିଗଲେ କଣ ହେଲା, ତାକୁ ସେ ଘର ଗୁଡାକ କିଛି ମନକୁ ପାଇଲା ନାହିଁ । ଆଉରି କଣ ହେଲା ନା, ଗାଈ ବେଳକୁ ବେଳ ପାଳ ଚୋବେଇବାରୁ ତା ସବୁ ଯାଇ ପେଟ ଭିତରେ ଭରତି ହେଲା । ଟିପକୁ ତହୁଁ ସେ ଭିତରଟା ଆଉ ପସନ୍ଦ ଲାଗିଲା ନାହିଁ । ଥାନ ନିଅଣ୍ଟ ହବାରୁ ସେ ପାଟିକରି କହିଲା, "ଓପରେ କିଏ ଅଛ ହେ କିଏ ଅଛ, ମୋର ଆଉ ପାଳ ଲୋଡ଼ା ନାହିଁ, ଆଉ ଦିଅନା ।" ଏତିକି ବେଳକୁ କଣ ହେଉଛି ନା, ମାଲିଅ ବସି ଗାଈ ଦୁହୁଁଛି । ସିଏ ଯିମିତି ଶୁଣିଲା ଚାରି ଅଡ଼କୁ ଚାହିଁଲା, କେହି କୁଆଡେ ନାହାନ୍ତି ଦେଖିଲା ।

ଘାଟରେ ସିଏ ଯୋଗ ଶବଦ ଶୁଣି ଉଠିଥିଲା, ତାଙ୍କୁ ସିମିତି ଜଣା ପଡ଼ିଲା। ମନ୍ଦିରରେ ତା ଦନ୍ତଠାଯାକ ଥରଲା। ଘଡ଼ ଘଡ଼ ହାତରୁ ଖସି ପଡ଼ିଲା। ଗୋଡ଼ର ଲଙ୍କ ପଠ ହୋଇ ଧାଇଁ ଧାଇଁ ଯାଇ ମାଧବକୁ କହିଲା, "ମାଉ କଏ, ଗାଈଟା କଥା କହୁଚ !" ସାଧବ ତା କଥା ଶୁଣି ବସୁରଲା ହଲଅ ବାସ୍ତା ହୋଇଗଲା। ହେଲେ, ତା ସାଥିରେ ସାଥିର ଜଣ ହୋଇଚ ଦେଖିବାପାଇଁ ଗୁହାଳକୁ ଅଇଲା। ସିଏ ଗୁହାଳକୁ ପଶୁ ନ ପଶୁ ହିପ ତୋ ଅନ୍ତ୍ର ପେଟ ଭିତରେ ପାଟିକରି କହିଲା, "ମୋର ଅଜ ପାଳ ଲୋଡ଼ା ନାଇଁ।" ସାଧବ ଶୁଣି ତାର ଭୂର ଭସ୍ମ ହୋଇ ଗଲା। ସିଏ ଭାବିଲା, ଗାଈକି କିଏ ମନ୍ତ୍ରର କରଦେଇ ଡାହାଣୀ ଲଗେଇ ଦେଇଚ। ସିଏ ତ ଏକ ଜାଠ, ତାର ଦୟାମାୟା କିଛି ନ ଥାଏ, ଏତେବଡ଼ ଠେଙ୍ଗା ଧଇଲା, ଗାଈକି ଧୂର୍ ଧୂର୍ ପିଟିଲା। ଆଖି ବୁଜ ସିଏ ପିଟୁଚ ପିଟୁଚ, ଗାଈ ଏତେଣ ତଳେ ପଡ଼ ହାକାଶ। ଗାଈର ପେଟ ଫାଟି ଅନ୍ତ୍ରବୁଜୁଳା ଭିର ପଡ଼ିଲା। ସାଧବ ମନ ଦୁଃଖରେ ଘରକୁ ଗଲା। ହାଡ଼ ଅଧ ମଲା ଗାଈଟାକୁ ନେଇଗଲେ ଯେ, ତା ଅନ୍ତ୍ରବୁଜୁଳାଟାକୁ ଖାଇ ଗଦାରେ ପକାଇ ଦେଇ ପଳେଇଲେ।

ଅନ୍ତ୍ରବୁଜୁଳା ଭିତରେ ଯୋଗ ତସ୍ ଥିଲା, ସେଥି ଭିତରେ ହିପ ଥିଲା। ବଡ କଷ୍ଟରେ ଖୁନ୍ଦାଲ ହୋଇ ହିପ ମେ ଭିତରୁ ମୁଣ୍ଡ କାଢ଼ିଲା। ତା କପାଳରେ ତ ଆଉର ଦୁଃଖ ଥିଲା; ସେଇ ସମୟକୁ କଣ ହୋଇଚ ନା, ମାଉଁସ ଲୋଭରେ ଗୋଟେ ଗଧିଆ ଆସି ଖତଗଦା ପାଖରେ ହାବୁଡ଼ିଚ। ହିପ ଯିମିତି ମୁଣ୍ଡ କାଢ଼ିଚ, ଗଧିଆ ସିମିତି ସେଇ ଅନ୍ତ୍ରବୁଜୁଳା ସାଙ୍ଗରେ ତାକୁ ଗୋଟେ ବୁଙ୍ଗାଡ଼ିବ ଗିଲିଦେଲା। ହିପ ଅଉ କଣ କରିବ ? ଖାଲି ଯାହିଯ ଧରି ରହିଲା। ଗଧିଆ ତ ମହା ଖୁସିରେ ବୁଲୁଚ, ହିପ

ତା ପେଟ ଭିତରୁ ତାକୁ ଡାକିକରି କହିଲା,"ହଇ ହେ ଭାଇ, ଗୋଟେ ଜାଗାରେ ଭୋଜି ହଉଚି, ଯିବକି ? ଗଧିଆ କହିଲା," କୁ'ଠି ?" ଟିପ ତା ନିଜଘର ନାଁ ନ କହି କହିଲା," ଇମିତି ଗୋଟେ ଥାନ ଅଛି ଯେ, ତମେ ଯେବେ ସେଇ ଭିତରକୁ ଗଳି କରି ଯାଇ ପାରିବ କେତେ ପିଠା, କେତେ ମାଛ ମାଉଁସ, କେତେ କଣ ଅଛି, ଯାହା ବଗୁରିବ ତା' ଖାଇବ ।" ଗଧିଆ ତା ଶୁଣି ମହାଆନନ୍ଦ ହେଲା । ସେ ଆଉ ଥରେ ପଚାରିବ କଣ ? ସେଇ ଦିନ ରାତି ଟିପ ଯେଉଁ ବାଟେବାଟେ ବାଟ ବତେଇଲା ସିଏ ସେଇ ବାଟେବାଟେ ଗଲା । ଯାଇ ଯାଇ ଟିପ ଘର ବାଡ଼ି ଦୁଆରେ ପହଂ-ଞ୍ଚିଲା । ସେଠୁ ତାଙ୍କ ଭାଣ୍ଡି ଶାଳକୁ ଗୋଟେ ଗଳିଆ ବାଟ ଅଛି । କେଷ୍ଟ-ନେଷ୍ଟ ହୋଇ ସିଏ ସେଇ ବାଟେ ଘର ଭିତରକୁ ପଶିଲା । ସେଠି ତା ମନ ବୋଧକରି ଯେତେ ଯୋଉଟି ଯାହା ଥିଲା, ସବୁ ପେଟେ ଖାଇଲା । ଖାଇସାରି ଯିବାକୁ ବସିଲା । ଅଉ ଯିବ କିମିତି ? ଅଇଲାବେଳେ ପୋଳବାଟେ ଆସିଥିଲା, ପେଟେ ଗିଳି ଦବାରୁ ଅଉ ସେ ବାଟେ ଗଳି ପାରିଲା ନାଇଁ । ଟିପର ଏତିକି ବେଳେ ପାଳି ପଡ଼ିଲା । ସିଏ ସେଠୁ ତା ବଳେ ବଳେ ପାଟି କଲା । ଗଧିଆ ତା ଶୁଣି ମନେ ମନେ ରାଗ ହୋଇ କହିଲା—"ତୁମ ହଉଚୁ କି ନାଇଁ, ପାଟିକଲେ ଯେ ସମସ୍ତେ ଉଠିବେ ।" ଟିପ ତ ମହା ପାରଗା, କହିଲା," ମୋର କଣ ହେଇଯିବ କି ? ତମେ ଖାଇ ପିଇ ଖୁସି ହେଲ, ମୁଁ ସିମିତି ଟିକିଏ ପାଟି କରି ଖୁସି ହେବି ନାଇଁ ?" ଯା କହି ଟିପ ଯେତେ ବଡ଼ ପାଟି କରିପାରେ, କଲା, ଗୀତ ଗାଇଲା ।

ଘରେ ପାଟିଶୁଣି ଟିପର ବାପ ମାଆ ଉଠିଲେ କଣ ହୋଇଚି ବୋଲି ଉହୁଙ୍କି କରି ଦେଖିଲା ବେଳକୁ ଦେଖିଲେ, ଭାଣ୍ଡି ଶାଳରେ ଏତେ ଗଧିଆଟେ । ଗିରସ୍ତ ସେଠୁ ଧାଇଁ ଯାଇ ଗୋଟେ କୁରାଢ଼ୀ, ଅଉ ଗୋଟେ ଦା' ନେଇ ଆଣିଲା । ଦା'ଟା ଭରିଯା ହାତକୁ ବଢ଼େଇ ଦେଇ

କହିଲା, "ତମେ ପଛରେ ଥିବ ନା, ମୁଁ ଯେମିତି ତା ମୁଣ୍ଡକୁ ପାହାରେ ପକେଇବି, ତମେ ତା ପେଟଟାକୁ ଦା'ରେ ଫୋଡ଼ି ଦବ ।" ଟିପ ଏ କଥା ଶୁଣି ପାଟି କରି କହିଲା, "ବାପା ! ବାପା ! ମୁଁ ଏ ଭିତରେ ଅଛି, ଗଧିଆ ମତେ ଗିଳି ଦେଇଛି ।" ଟିପ ପାଟି ଶୁଣି ବାପ କାଉଳି ବାଉଳି ହୋଇ ମହାପ୍ରଭୁଙ୍କୁ କେତେ ଜଣେଇଲା । କହିଲା, "ମା ଭଗବତି ! ପାଠ ଦେବି, ଛତି ଦେବି, ଟିପ ମୋର ଶୁଭରେ ଅସୁ ।" ପେଟ ଫୋଡ଼ି-ଦେଲେ କାଳେ ପୁଅ ଦେହରେ ବାଜିବ ବୋଲି ମା ଧା' ପକେଇ ଦେଲା । ବାପ ତେଣେ କସି କରି ଇମିତି ପାହାରେ ଗଧିଆ ମୁଣ୍ଡକୁ ଦେଲା ଯେ, ସେଇ ପାହାରକେ ସିଏ ତଳେ ପଡ଼ି ମରିଗଲା । ବାପ ମାଆ ମିଶି ଗଧିଆ ପେଟ ଚିରି ପୁଅକୁ କାଢ଼ିଲେ । ଦହେଁ ପୁଅକୁ କୁଣ୍ଡେଇ ପକେଇ କହିଲେ, "ଆହା ଧନ, କେତେ ସନ୍ତର ସନ୍ତୁଳରେ ଥିଲୁ, ପ୍ରଭୁ ତତେ ଆଣିଲେ ।" ଟିପ କହିଲା, "ବାପା, ମୁଁ ତମ ପାଖରୁ ଗଲାଠୁଁ ରାଇଜଯାକ ବୁଲି ଆଇଲିଣି । ହେଲେ, ଆଜ ଟିକିଏ ମେଲକୁ ଆଇଲି ।" ବାପା ସେଠୁ ପଚାରିଲା, "କାହିଁକି, ତୁ କୁ'ଠି ଥିଲୁ କି ?" ଟିପ କହିଲା, "ମୁଁ ତ ଗଲି, ଯେ ହଳ ଯାଇ ଗୋଟେ ମୂଷା ଗାତରେ ପଡ଼ିଲି । ସେଠୁ ଯାଇ ଗୋଟିଏ କଙ୍କଡ଼ା ଗାତରେ ରହିଲି । ତା ପରେ ପାଳ ସାଙ୍ଗରେ ଗାଈଟେ ମତେ ଗିଳି ଦେଲା । ଏବେ ତ ଦେଖୁଚ ଗଧିଆ ପେଟରୁ ବାହାରିଲି ।" ମାଆ ଲୁହ ଛଳ ଛଳ ହୋଇ ପୁଅକୁ କାନ୍ଧି ପକେଇ କହିଲା, "ଆହା ଧନ, କେତେ ଦୁଖ ପାଇଲୁ, ଏଣିକି ରାଇଜ ଯାକ ସୁନାରୂପା ଗଦା କଲେ ତତେ ଆଉ ଛାଡ଼ିବି ନାଇଁ ।" ସେଇଠିଣି ମା କେତେ କଥା ଆଣି ତାକୁ ଖାଇବାକୁ ବାଢ଼ି ଦେଲା । ବୁଲି ବୁଲି ତା ଲୁଗାପଟା ଚିରି ଯାଇ ଥିଲା ବୋଲି ବାପ ତା ପେଇଁ ଲୁଗା, ଅଙ୍ଗି କିଣି ଦେଲା । ଟିପ ବାପ ମାଆଙ୍କ ପାଖରେ ସୁଖରେ ରହିଲା ।

---




ଏକ ରାଇଜରେ ଏକ ରଜା ଥାଆନ୍ତି । ସେ ରଜାଙ୍କର ବାର ଝିଅ । ରଜା ଝିଅମାନଙ୍କୁ ଭାରି ସୁଖ ପାଉଥାନ୍ତି; ଯିଏ ଯେତେବେଳେ ଯାହା କହନ୍ତି ତା ଆଣି ଦିଅନ୍ତି । ସେ ବାରଭଉଣୀଯାକ ରୂପରେ ସମସର, କେହି କାହାକୁ ଊଣା ନୁହନ୍ତି, ଯେତେ ଯିମିତି କି ଗୋଟିଏ ଗୋଟିଏ ଛାଞ୍ଚରେ ଢଳା । ତାଙ୍କ ସୁନ୍ଦରପଣରେ ରାଇଜ ଆଲୁଅ ହୋଇ ଯାଉଥେ । ସମସ୍ତଙ୍କର ଏକାପରି ପାଠ ପଢ଼ା, ଏକାପରି ଅଳଙ୍କାର ପିନ୍ଧା । କିଏ କାହାକୁ ଦଣ୍ଡେ ଛାଡ଼ି ଚଳି ପାରନ୍ତି ନାହିଁ । ସଭିଏଁ ଏକାଠି ବସନ୍ତି, ଏକାଠି ଗାଧୋଇ ଯାନ୍ତି, ଏକା ବେଳକେ ଖାଆନ୍ତି; ଏକା ଘରକେ ଶୁଅନ୍ତି । ଘରେ ବାର ଭଉଣୀଙ୍କ ସେଇଁ ବାରୋଟି ପଲଙ୍କ । ପଲଙ୍କ-ଗୁଡ଼ିକ ଏକାପରି ସମତୁଲ । ଖୁରା ସୁନାରେ, ଫୁଲ ହୀରାରେ, କୁଟିକାମ ମୋତି ମାଣିକରେ—କିଏ କାହାକୁ ଊଣି ଦବାକୁ ନାହିଁ ।

ଏ ବାରଭଉଣୀଯାକଙ୍କୁ କି ଗୋଟିଏ ମନ୍ତ୍ର ଜଣା ଥାଏ—ଯିମିତି ରାତିରେ ନିଶା ଗରଜେ, ନଅର ବାଆର ନିଛାଟିଆ ହୋଇ ଯାଏ, ଭିତର-ଖଞ୍ଜାରେ ହୋର ଶବଦ ଶୁଭେ ନାହିଁ, ବାରଭଉଣୀଯାକ କଣ କରନ୍ତି କି, କ' ରାଇଜକୁ ବୁଲି ବାହାରନ୍ତି । ସେମାନେ ତ ମନ୍ତ୍ର ଜାଣି ଥାଆନ୍ତି, ତାଙ୍କ ଯିବା ଆସିବା କେହି ଦେଖନ୍ତି ନାହିଁ । ଯାଆନ୍ତି ଯେ, ରାହାନ୍ତିଆ ପହରକୁ ଉଆସକୁ ଫେରି ଆସି, ଯିମିତି ଶୋଇବାର କଥା ସିମିତି ଶୋଇ ପଡ଼ନ୍ତି । ହେଲେ, ସକାଳୁ ଦେଖିଲା ବେଳକୁ ତାଙ୍କ

ଲୁଗାପଟା ଖାଲି ମଇଳ ମେଳଛ ଦିଶୁଥେ, ରାତ୍ର ଅନିଦା ହେଲ ପରି ଆଖି ନାଲି ଟହ ଟହ ହୋଇ ଫାଟି ପଡୁଥେ । ଦିନ ପହରକ ଯାଏ ପଡ଼ିଁ ଶୋଇ ଥାଆନ୍ତି ।

ଏ କଥା ଉଠି ଉଠି ରଜାଙ୍କ କାନକୁ ଗଲା । ରଜା ସତ ମିଛ ବୁଝିବାକୁ କେତେ ପହରା ଦିଆଇଲେ, ଜଗୁଆଳ ରଖାଇଲେ; ହେଲେ, କିଛି ଅନ୍ତ ପାଇଲେ ନାହିଁ । ସବୁ ଦିନ ସକାଳୁ ଆସି ଦେଖନ୍ତି, ଝିଅମାନଙ୍କର ଲୁଗା ମଇଳା, ଆଖି ନାଲି ଟହ ଟହ, ବାର ଭଉଣୀଯାକ ଘୁମୋଇ ଥାନ୍ତି ।

ରଜା ସେଠୁ ରାଇଜଯାକ ଢେଙ୍କୁରା ବଜାଇ ବୁଝାଇଲେ "ଯିଏ ଦେଖି ଆସି କହିପାରିବ ଯେ, ଜେମାମାନେ ରାତିରେ କୁ' ରାଇଜକୁ ବୁଲି ଯାଉଛନ୍ତି, ସିଏ ସେମାନଙ୍କ ଭିତରୁ ଯାହାକୁ କହିବ ତାକୁ ବାହା ହେବ, ଆଉ ମୋ ଅନ୍ତେ ଏ ରାଇଜର ରଜା ହେବ । ନାହିଁ, ଯିଏ କହି ପାରିବ ବୋଲି କହିବ, ମାତ୍ର ତିନିଦିନ ତିନିରାତି ଭିତରେ କହି ପାରିବ ନାହିଁ, ଶୂଳିଆ ପଦାରେ ତା ମୁଣ୍ଡ କାଟି ହେବ ।

ପହିଲୁ ଏକ ରଜାପୁଅ ଆସିଲା । ତାକୁ ଭାରି ଆଦରରେ ଜେମାଙ୍କ ପାଖଘରେ ବସାଇଥିଆ ଦିଆହେଲା । ଜେମାଙ୍କ ଘର ଆଉ ରଜାପୁଅ ଘର ମଝିରେ ଖାଲି କାନ୍ଥଟେ । ସେ ଘରେ ଶୁଣ୍ଡି କଲେ ଏ ଘରକୁ ଶୁଭେ । ସଞ୍ଜ ବେଳକୁ ଜେମାମାନେ ଆସି ରଜାପୁଅକୁ ଭାରି ଆଦର ଦେଖେଇଲେ, କଥାବାର୍ତ୍ତା ହୋଇ ଗଲେ; ହେଲେ, ରଜାପୁଅର ମନ ଆଉ କାହିଁରେ ନ ଥାଏ । ସିଏ ମନେ ମନେ ଜାଗରଥିର ଥାଏ, ଯିମିତି କି ଜେମାମାନେ ସବୁ କୁଆଡ଼େ ଯାନ୍ତି ନା

କାନ୍ଦନ୍ତି । ଏମିତି ହୋଉ ହୋଉ ଅଧରାତି ବେଳକୁ ରଜାପୁଅକୁ ନିଦ ଲାଗି ଗଲା ଯେ, ସିଏ ଶୋଇ ପଡ଼ିଲା । ଉଠିଲା ବେଳକୁ ସକାଳ । ଦେଖିଲା, ଜେମାମାନେ କୁଆଡ଼ୁ ବୁଲି ବୁଲି ଆସି ହାଲିଆ ହୋଇ ପଲଙ୍କ-ମାନଙ୍କରେ ଶୋଇଚନ୍ତି । ତା ଆର ରାତି ସିମିତି ଜଗିଲା, ଶୋଇ ପଡ଼ିଲା । ଏମିତି ତିନିରାତି ଗଲା, କିନ୍ତୁ ହେଲେ କଥା ସେ ରଜାଙ୍କୁ କହିପାରିଲା-ନାହିଁ । ରଜା ତ ଆଗରୁ ହୁକୁମ କରିଚନ୍ତି, ନ କହି ପାରିଲେ ମୁଣ୍ଡ କାଟି ଦିବ, ଏ ନ କହି ପାରିଲାରୁ କଟୁଆଳ ଆସି ତାକୁ ଶୂଳିଆ ପଦାକୁ ନେଇଗଲା, ସେଠି ତା ମୁଣ୍ଡକାଟ ହେଲା । ଏମିତି କେତେ ରଜାପୁଅ ଆସିଲେ, କେତେ ମନ୍ତ୍ରୀପୁଅ ଆସିଲେ, କୁ' ରାଇଜରୁ କେତେ ଶାଳୁଅ-ଗଜାପର ଭେଣ୍ଡାମାନ ଆସିଲେ—ସମସ୍ତେ ଆସି ରଜାଝିଅ ଲୋଭରେ, ରାଇଜ ଲୋଭରେ ଜଗନ୍ତି ମାତର କେହିହେଲେ କିନ୍ତୁ ଉଣ୍ଡି ଜାଣିପାରନ୍ତି ନାହିଁ । ଶେଷକୁ ଶୂଳିଆ ପଦାରେ କୁଢ଼ କୁଢ଼ ହାଡ଼ ଗଦା ହୋଇଗଲା ।

ଏକ ଧାନକର ହୋଇଚ ଭଣ, ସେଇ ରାଇଜ ବାଟେ ଏକ ପରଦେଶୀ ପାଇକ ତା ଘରକୁ ଯାଉଚ । ଲଢ଼େଇରେ ଖୁଣ ହେବାରୁ ସେ ଆଉ ଲଢ଼ି ପାରିଲା ନାହିଁ, ରଜା ତାକୁ କିଛି ପାଇଟି ପଦ ନ ଦେଇ ତଡ଼ି ଦେଇଥିଲେ । ସିଏ ଯାଉ ଯାଉ ଏକ ବଣ ପାଖରେ ଗୋଟିଏ ବୁଢ଼ୀ ମାଈପିକୁ ଭେଟିଲା । ବୁଢ଼ୀଟି ତାକୁ ଦେଖି ପଚାରିଲା, "କିରେ ବାପ, କୁଆଡ଼େ ଯାଉଚୁ ?" ପାଇକ କହିଲା, "ଅଁ ଲୋ ମାଉସି, ଏ ପୋଡ଼ା-କପାଳରେ ଆଉ କି ସୁଖ ଅଛି ଯେ କୁଆଡ଼େ ଯିବ ? ଯାଉ ଯାଉ ଯୁଆଡ଼େ ଯିବ । ଏଠିକା, ଏ ରାଇଜ ରଜାଙ୍କ ଜେମାମାନେ ରାତିରେ କୁ'ଠାକୁ ବୁଲିବାକୁ ଯାଉଚନ୍ତି ଜାଣିବାକୁ ମୋର ଭାରି ମନ । ଯାଉଚ, ଯେବେ ଜାଣିପାରନ୍ତି, ତେବେ ରଜା ହୋଇ ପାରନ୍ତି ।"

ବୁଢ଼ୀ କହିଲା, "ଏ ତ କିଛି ବଡ଼ କଥାଟେ ନୁହେ ଯେ ଏହା କହିଲୁ । ତାଙ୍କୁ ଜଣିଲା ବେଳକୁ ଠିକ୍ ତାଙ୍କପାଖରେ ରହିବ, ବଡ଼ ଜେମା ଯେତେବେଳେ ମୋଦକଟିଏ ଆଣି ଖାଇବାକୁ ଦବ, ତାକୁ ଖାଇବ ନାହିଁ; ସିଏ ଗଲା ଉତ୍ତାରୁ ମିଛରେ ଘୁଙ୍ଗୁଡ଼ି ମାରି ଶୋଇବ, ତେବେ ତ ସବୁ ଅନ୍ତର ଗୋଚର ପାଇ ପାରିବ ।" ଏହା କହି ବୁଢ଼ୀ ପାଇକକୁ ଗୋଟିଏ ବନାତ ଦେଲା । କହିଲା, "ହେଇଟି, ଏଟିକି ନବୁ ଯେ; ଏହାକୁ ଘୋଡେଇ ହୋଇ ପଡ଼ିଲେ ତୁ ସମସ୍ତଙ୍କୁ ଦେଖି ପାରିବୁ ତତେ ଆଉ କେହି ଦେଖି ପାରିବେ ନାହିଁ । ଇମିତି ହୋଇ ତୁ ଜେମାଙ୍କ ପଛେ ପଛେ ଜଗି ଜଗି ଯିବୁ ।"

ବୁଢ଼ୀଠୁ ଏ କଥା ସବୁ ଶୁଣି ପାଇକ ରଜାଙ୍କ ପାଖକୁ ଯାଇ ଜଣେଇଲା ଯେ, ତାକୁ ତିନ ରାତି ଯିଲ ହେଲେ ଜେମାମାନେ କୁଆଡ଼େ ଯାଉଚନ୍ତି ସିଏ କହିଦବ । ରଜା ହଁ କଲେ । ତାକୁ ସିମିତି ଭଲଙ୍କର ବସା ଛୁଆ ଦେଇ ଜେମାଙ୍କ ପାଖ ଘରେ ରଖେଇଲେ ।

ବେଳବୁଡ଼ି ବେଳକୁ ବଡ଼ ଜେମା ଏକ ମୋଦକ ଧରି ପାଇକକୁ ଖାଇବାକୁ ଦବ ବୋଲି ଆସିଲା । ପାଇକ ତ ସବୁ ପେଅଁପାଅଁ ଆଗରୁ ବୁଝି ରଖିଚ, ଜେମା ତା ସଙ୍ଗେ ଆଳାପ କରି ଯିମିତି ଘରକୁ ଗଲା ଭିତରେ, ଇଏ ମୋଦକଟିକୁ ପଞ୍ଜରବାଟେ ଥରେ ପାଖକୁ ଫୋପାଡ଼ି ଦେଇ ମିଛରେ ଶୋଇପଡ଼ି ଘୁଙ୍ଗୁଡ଼ି ମାରିଲା । ଜେମାମାନେ ତା ଘୁଙ୍ଗୁଡ଼ି ଶୁଣି ମନେ ମନେ ହସିଲେ, କହିଲେ, "ଅହା ମରିବାକୁ ତ କେତେ ବାଟ ଥିଲା, ଇମିତି ମରିବାକୁ କାହିଁ ଆଇଲୁ ?"

ଏହା ଉତ୍ତାରୁ ଅଧରାତି ହେଲାରୁ ସଭିଏଁ ଆପଣା ଆପଣା ପେଟରା, ଅଣ୍ଡୁଖୁଣ୍ଡ ଫିଟେଇ ପାଟ ପଟନା କାଢ଼ିଲେ, ବେଶ ହେବ ବୋଲି

ଭରଭର ହୋଇ ବେଶବାସ ହେଲେ, ବେଶ ହେଉଚନ୍ତି, ସାନ ଜେମା କହିଲା, "ଆଜ ମୋ ମନଟା କାହିଁକି ସାଙ୍ଗି ହେଉଚି ନାହିଁ ! କଣ ହେଲେ ଅନିଷ୍ଟ ଘଟିବ ।" ବଡ ଭଉଣୀ ସେଠୁ କହିଲା, "ହା'ଲୋ ଅଲଗିଣି, ତୋର ସରୁଦନେ ଏ କଥା ଗଲା ନାହିଁ । ଦେଖୁଚୁ ତ କେତେ ରଜାପୁଅ, କେତେ ମନ୍ତ୍ରିପୁଅ ଜଗି ଜଗି ଗଲେ, କେହି ହେଲେ ସୁବିଧା ପାଇଲେ ନାହିଁ, ଏ ପୁଣି ଅସିଣ ପାଇକଟେ ଯେ ଏଥିକି ଏତେ ଡର ? ଏ ତ ଯେମିତି ଶୋଇ ପଡ଼ିଥାନ୍ତା, ମୁଁ ତାକୁ ଅଉର ନିଶା ମୋଦକ ଖୋଇଚି, ଏଥିରେ ସିଏ ଅଉ ଉଠିବ ବୋଲି ଭାବଚୁ ?"

ସଜବାଜ ହୋଇ ସଭିଏଁ ଅସି ପାଇକକୁ ଦେଖିଲେ, ସିଏ ଘୁଙ୍ଘୁଡ଼ି ମାରୁଚି । ତାର ହାତ ଗୋଡ଼ ହଲୁ ନାହିଁ କି ଚଳୁ ନାହିଁ । ବଡ ଭଉଣୀ ସେଠୁ ଅପଣା ପଲଙ୍କ ପାଟକୁ ଯାଇ ତୁନି ତୁନି କରି କଣ ମନ୍ତ୍ର ପଢ଼ି କହିଦେଲା ଯେ, ପଲଙ୍କଟା ଅପେ ତଳକୁ ଲସି ଗଲା, ଆଉ ସେଠି ତଳକୁ ଗୋଟେ ବାଟ ଫିଟି ଗଲା । ଅଗରେ ବଡ ଭଉଣୀ, ତା ପଛକୁ ବଡ଼ ମଝିଆଁ, ଇମିତି ସଭିଏଁ ଗୋଟିକି ଗୋଟି ହୋଇ ସେଇ ବାଟେ ତଳକୁ ତଳକୁ ଗ୍ଳଲିଗଲେ । ପାଇକ ସେତେବେଳକୁ ବନାତଟି ପୋଟେଇ ହୋଇ ତାଙ୍କ ଭୁଅରମୁହଁରେ ଅସି ହାଜର ହେଲାଣି । ସାନ ଜେମା ଯିମିତି ଭିତରକୁ ଯିବାକୁ ଗୋଡ଼ କାଢ଼ିଲା, ପାଇକ ତା ପଛେ ପଛେ ଗ୍ଳଲିଲା । ସେ ଭିତରକୁ ତ ପାହାଚ ପଡ଼ିଚି, ପାଇକ ଯାଉ ଯାଉ ସାନ ଜେମାର ଲମ୍ବ ପଣତ କାନଟା ପାହାଚରେ ଘୁଷୁରୁ ଥିଲା, ଅଜାଣତରେ ଚକଟି ଦେଲା । ସିଏ ସେଠୁ ବଡ଼ କାକୁତିରେ ପାଟିକରି ଡାକିଲା, "ଏ ନାନି, ଏ ନାନି, ମୋ ପଛରୁ କାନଟା କିଏ ଭିଡ଼ି ଧରିଲା ।" ବଡ ଭଉଣୀ କହିଲା, "ନାହିଁ ମ, ତୋ କାନ କିଏ କାହିଁକି ଭିଡ଼ିବ । କାନ୍ଥରେ କଣ୍ଟା ଫଣ୍ଟା ଥିବ ଯେ କାନି ଲାଗି ଯାଇଥିବ ।"

ଶେଷେ କି ଦ'ଶହ ପାହାଚ ଗଲାରୁ ସଭିଏଁ ତଳକୁ ଓହ୍ଲେଇଲେ । ସେ ତଳେ କଣ ହୋଇଚି କି, ଅତି ସୁନ୍ଦର ବଗିଚାଟିଏ ଅଛି । ତହିଁର ଗଛ ପତ୍ର ସବୁ ଖାଲି ରୁପାର । ବଗିଚାଯାକ ଜହ୍ନର ଆଲୁଅ ପଡ଼ି ଝକ ଝକ ହୁଏ ଥାଏ । ପାଇକ ତ ସଙ୍ଗରେ ଥିଲା, ବିଚାରିଲା, ଏ ଗଛରୁ ଗୋଟେ ଡାଳ ନେବ ଯେ ଆସିଥିଲି ବୋଲି ରଜାଙ୍କ ଆଗରେ ଚହଟ ଦେବ । ଯାହା ଭାବ ସେମିତି ସିଏ ଡାଳଟେ ଭାଙ୍ଗିଚି, ଗଛରୁ ଏଡ଼େ ଘିଡ଼ଘିଡ଼ିଆ ଶବ୍ଦ ଶୁଭିଲା । ତା ଶୁଣି ସାନ ଜେମା ଭୟରେ ଥରହର ଛାଡ଼ିଲା, "ନାନି, ଆଜି କଣ ହେଲେ ଅନିଷ୍ଟ ଘଟିବ । ଆମ ପଛରେ ଏଠି କିଏ ଜଣେ ଅଛି । ଶୁଣିଲୁ ନାଇଁ, ଏଇଲେ କେମିତି ଗୋଟେ ଶବ୍ଦ ହେଲା ? ଆଉ ତ କେବେ ଆମେ ଇମିତି ଶୁଣି ନ ଥିଲେଁ ।" ବଡ଼ ଜେମା କହିଲା, "ନାଇଁଲୋ, ଇଏ ଆଉ କିଛି ନୁହେ, ଆମେ ଯିବା ବୋଲି ରଜାପୁଅମାନେ ତେଣେ ଆନନ୍ଦରେ କୋଳାହଳ କରୁଚନ୍ତି ।"

ରୁପା ବଗିଚା ଉତ୍ତାରୁ ସୁନା ବଗିଚା ପଡ଼ିଲା । ସେ ବଗିଚାର ଗଛ ପତ୍ର ସବୁ ସୁନାରେ ତିଆରି । ସବୁଥିରେ ସୁନାର ଫୁଲ ଫୁଟିଚି, ସୁନାର ଫଳ ଧରିଚି । ତା ପାଖରେ ଆଉ ଗୋଟେ ବଗିଚା ପଡ଼ିଲା ଯେ, ସେ ବଗିଚାର ଗଛ ପତ୍ର ଖାଲି ହୀରାରେ ଗଢ଼ା । ପାଇକ ସବୁଥିରୁ ଡାଳେ ଡାଳେ ଭାଙ୍ଗିଲା, ସବୁ ଥର ସେମିତି ରଡ଼ିଟେ ଲେଖେ ଶୁଭିଲା । ସାନ ଜେମା ଭୟରେ ପଛରୁ ସବୁ ଥର ପାଟି କରି ନାନୀଙ୍କୁ ଡାକେ; ମାତ୍ର ନାନୀ ତାକୁ ରଅଡ଼ି ଦିଅନ୍ତି ବତେଇ ଚୁପ କରି ଦିଏ ।

ଏହାପରେ ସଭିଏଁ ଯାଇ ଏକ ନଦୀ ଘାଟରେ ପହଞ୍ଚିଲେ । ସେ ନଦୀକୁ ଚାହିଁଲେ ଅଧି ପାଉଁ ନାଇଁ । ଡାଚକେନ୍ଦୁ

ଥିର ପାଣି, ଖାଲି ଲହରି ଉପରେ ଲହରି କୂଳକୁ ଉବୁକେଇ ଉଠୁଚି । କୂଳରେ କଣ ହୋଇଚି ନା, ବାରଗୋଟି ଧାନ ସାନ ନାଆ ବନ୍ଧା ହୋଇଚି । ସେଥିରେ କେହି ନାଉରି ନାହାନ୍ତି । ବାର ଜଣ ଦିବ୍ୟ-ସୁନ୍ଦର ରଜାପୁଅ ଗୋଟିଏ ଗୋଟିଏ ନାଆରେ ଏକ ଏକ ହାତ ଧରି ବସିଚନ୍ତି । ଏ ରଜା ଝିଅମାନଙ୍କୁ ଦେଖି ସେମାନେ ଭାରି ବହୁମାନ କରି ନାଆକୁ ନେଇ ଗଲେ । ସବୁ ନାଅରେ ଜଣେ ଲେଖାଏଁ ରଜାପୁଅ ସାଙ୍ଗରେ ଜଣେ ଲେଖାଏଁ ଜେମା ବସିଲେ । ସାଇଁକି ତ କାହା ଆଖିକି ଦିଶେ ନାହିଁ, ହିଏ ସାନ ଜେମା ପଛେ ପଛେ ତା ନାଆ ଉପରକୁ ଉଠିଗଲା ।

ରଜାପୁଏ ନାଆ ବାହିଲେ । ଯାଉ ଯାଉ ଯେଉଁ ରଜାପୁଅ ସାନ ଜେମା ସାଙ୍ଗେ ବସିଥିଲା, ନାଅ ମଝି ଗଙ୍ଗାରେ ହୋଇଚି, କହିଲା, "କାହିଁକି ଆଜି ଏ ନାଆଟା ମୋର ଏତେ ଓଜନ ଲାଗୁଚି, ବାହି ବାହି ହାଲିଆ ହୋଇ ଗଲଣି, କିଛି ଜାଣି ପାରୁ ନାହିଁ ।" ଜେମା କହିଲା, "ଆଜି କମିତି ଗୁଳୁଗୁଳିଆ ପାଗୁଟେ ହୋଇଚି ଯେ ତମକୁ ସେମିତି ଲାଗୁଥିବ । ମତେ ତ ଭାରି ଦହବିକଳ ଲାଗୁଚି ।"

ଦହ ଆର ପାଖେ ଗୋଟିଏ ଅତି ଉତ୍ତମ ସୁନ୍ଦର କାହିଁ ନଥିବା ଘର । ଦେଖିଲେ ଆଖି ଝଲସି ଯିବ, ମୁଣ୍ଡରୁ ଠେକା ଖସି ପଡ଼ିବ । ଭିତରେ ବାଇଦ ବାଜଣା ବାଜୁଚି ଯେ, ଘରରେ କାନେଇବାକୁ ମନ ହେବ । ରଜାପୁଅ ରଜାଝିଅ ସମସ୍ତେ ଆର କୂଳରେ ଓହ୍ଲେଇ ହାତ ଧରାଧରି ହୋଇ ସେ ଘର ଭିତରକୁ ଗଲେ । ଭିତରେ ଖଟପଲଙ୍କ ପଡ଼ିଚି, ଫୁଲ ଗନ୍ଧରେ ଘରଦ୍ୱାର ସଜା ହୋଇଚି । ସେ ଘରେ କିଛି ଦୁର୍ମିଳ ନୁହେଁ, ଯାହା ଲୋଡ଼ିବ ତା ଅଛି । ଏମାନେ ସେ ଭିତରକୁ ଯାଇ ଗପ ସପ

କଲେ, ଖେଳିଲେ, ବୁଲିଲେ, ନାଚିଲେ, ହସିଲେ । ଶେଷକୁ ପୋଇଲୀ ସଭିଙ୍କ ପାଇଁ ସୁନା ଥାଳୀ, ରୁପା ଗିନାରେ ଖାଇବାକୁ ଆଣି ଥୋଇ ଦେଲା । ସଭିଏଁ ଖାଇ ବସିଲେ । ମାଦକ ପାଇକ ଏଣେ କଲା କଣ ନା, ସାନ ଜେମା ପାଇଁ ବଢ଼ା ହୋଇଥିବା ଦୁଧଭାତ ଟିକେଟିକେ ଅଗରୁ ଅସି ପିଇ ଦେଲା । ସିଏ ଗିନା ଦେଖିଲା ବେଳେକୁ ଦୁଧ ନା ଦୁଧ ! ସେଠୁ ଭୟରେ ପାଟି କଲା । ବଡ଼ ଜେମା ତାଙ୍କୁ ତାକୁ କେତେ ବୋଧବାଧ କରି ବୁନ କରି ଦେଲା ।

ଖିଆ ପିଆ ସାରି ସମସ୍ତେ ଆସି ନାଅରେ ଫେରେ ବସିଲେ । ପାଇକ ଏ ଥରକ ବଡ଼ଜେମା ନାଅରେ ବସିଲା । ନାଆ ଆସି ଏ କୂଳରେ ଲାଗିଲାରୁ ରଜାପୁଅମାନେ ଜେମାମାନଙ୍କୁ ଭାରି ବନ୍ଧୁତ୍ୱରେ ମେଲଣି ଦେଲେ, ଅଉ, କାଲିକି ଅସିବାକୁ କେତେମନ୍ତେ କହିଲେ । ଜେମା ମାନେ ହଁ କରି ଅସିଲେ । ଏମାନେ ସିମିତି ବଗିଚା ଫଗିଚା ଡେଇଁ ଭଉଣୀ ପାହାଚ ପାଖେ ଅସି ପହଞ୍ଚିଲା ମାତ୍ରକେ, ପାଇକ ତ ଜାଣିକରି ଏଥର ବଡ଼ଜେମା ପାଖେ ପାଖେ ଥିଲା, କଣ କଲା ନା, ଅଗେ ଅଗେ ଧାଇଁ ଯାଇ ଅପଣା ଖଟରେ ତେଲାବାନ୍ଧ ଘୁଙ୍ଗୁଡ଼ି ମାରି ପଡ଼ିଗଲା । ଗଛ ସେତେବେଳକୁ ଫମର ଫାଟି ଯାଇଛି । ଜେମାଏ ଯାଇ ଦେଖିଲେ, ପାଇକର ନଦ ଭାଙ୍ଗିନି, ସିମିତି ଖଟରେ ଅଣ୍ଟ ମୁଣ୍ଡ ଯୋଡ଼ି ପଡ଼ିଛି । ଦେଖି ମନେ ମନେ ଭାରି ଅନନ୍ଦ ହେଲେ । ଲୁଗାପଟା ପାଲଟି, ଗୋଡ଼ ହାତ ଧୋଇ ଯେଝା ଖଟରେ ସିଏ ଶୋଇ ପଡ଼ିଲେ ।

ପାଇକ ସକାଳୁ ଉଠି କାହାକୁ କିଛି କହିଲା ନାଇଁ । ତା ଅର ଦିନ, ତା ଅର ରାତି ଇମିତି ଅଉ ଦି' ରାତି ଜେମାଙ୍କ ସାଙ୍ଗରେ

ସେଇପରି ଯାଇ ସବୁ ଦେଖିଲା । ଶେଷଦିନ ରାତିରେ ଗଲା ଯେ, ରଜାପୁଅ ମାନେ ଖାଇବାକୁ ଦେଇଥିବା ସୁନା ଥାଳଅରୁ ପଟେ କାଟରେ ଜାକି ଯେନି ଅଣିଲା ।

ତିନଦିନ ତିନରାତି ପୂରିଗଲାରୁ ଗମ୍ଭୁରୁ ତ୍ରାହିଣ ଆସିଲା, କଣ ହୋଇଚି କହିବାକୁ । ପାଇକ ଗଲା । ସାଙ୍ଗରେ ସୁନା, ରୁପା, ହୀରାର ତିନୋଟି ଡାଳ, ଆଉ ସୁନା ଥାଳଅଟି ନେଲା ।

ରଜା ପଚାରିଲେ, "ଜେମାମାନେ ରାତିରେ ଉଠି କୁଆଡ଼େ ରାଇଜକୁ ବୁଲି ଯାଆନ୍ତି କହି ପାରିବ ?"

ପାଇକ କହିଲା, "ମହିମା, କହି ପାରିବି । ଜେମାଏ ଯୁଆଁଡ଼େ ଯାଉଚନ୍ତି ସେ ଏକ ଅପୂରୂବ ରାଇଜ । ସେଠା ଗଛପତ୍ର ସୁନା, ରୁପା, ହୀରାରେ ଗଢ଼ା । ସେଠା ନଈ ପୋଖରୀରେ ଦୁଧ ବୋହେ । ସେ ଦେଶର ମେଘମାନେ ଅମୃତ ବରଷନ୍ତି । ଜେମାଏ ସେଇ ରାଇଜକୁ ଯାଇ ବାରଜଣ ରଜାପୁଅଙ୍କ ସାଙ୍ଗେ ଖେଳା ବୁଲା କରନ୍ତି"—ଏହା କହି, ଆଣିଥିବା ତିନୋଟି ଡାଳ ଆଉ ସୁନା ଥାଳଅଟି ରଜାଙ୍କ ପାଦତଳେ ଥୋଇଦେଲା । ରଜା ଚକିତ ହୋଇ ଏହା ସବୁ ଶୁଣୁଥିଲେ, ଏହା ଦେଖି ଭାରି ଆଶ୍ଚର୍ଯ୍ୟ ହେଲେ । ବାରଝିଅଙ୍କୁ ଡକାଇ ଏହାର ତଥ୍ୟାତଥ୍ୟ ବୁଝିବାକୁ ପଚାରିଲେ । ଜେମାଏ ଆସି କବାଟ କଣରେ ଠିଆହୋଇ ସବୁ ଶୁଣୁଥିଲେ । ବାପାଙ୍କ ଆଗରେ ନାହିଁ କରିବାକୁ ଆଉ ବାଟ ନାହିଁ । ସବୁ ସତ ସତ କଥା କହିଗଲେ ।

ରଜା ସେଠୁ ପାଇକ ଉପରେ ଭାରି ଖୁସି ହୋଇ କହିଲେ, "ଏମାନଙ୍କ ଭିତରୁ ତମେ କାହାକୁ ବିଭା ହେବ କହ ।"

ପାଇକ କହିଲା, "ମୁଁ ତ ବୁଢ଼ା ହୋଇ ଆସିଲିଣି ।" ଏହା କହି ବଢ଼ଜେମାର ହାତ ଧରି ନେଇଗଲା ।

ବୁଢ଼ାବରକୁ ବଡ଼ କନିଆଁ, ବେଦୀରେ ବସି ବାଭୁଧର ସମ୍ଭଳା, ଭୋଜି ଭିତରେ ଖାଇକି ଭାସିଗଲା । ବରକନିଆଁ ସୁଖରେ ଯୁଗୁଣିଇଙ୍କ ଜଲେ । ମୁଁ ଗଲାକୁ କଥା ନ କହିଲେ ।





# ଆଖଡା ଦଳ

ଏକ ଚଷାର ଗୋଟିଏ ଗଧ ଥିଲା । ଗଧଟିକି ସେ ଦଶ କି ପନ୍ଦର ବର୍ଷ ବୁହାଇଲା । ଶେଷକୁ ଯେତେବେଳେ ଗଧଟି ବୁଢ଼ା ହୋଇଗଲା, ତାହାର ବଳ ଖସି ଆସିଲା, ଆଉ କିଛି ପାଇଟିପଦାକୁ ପାରିଲା ନାହିଁ, ତେଣୁ ଧାନେ ତାର ମାଲିକ ବିଚାରିଲା, "ଏହାକୁ ରଖିକରି ଆଉ କିଛି ଲାଭ ନାହିଁ । ଖାଲି ପୋଷିବା ମାତ୍ର ଭାର ହେଉଛି । ଯାଉଛି ଏହାକୁ କଂସେଇକି ବିକି ଦେବି ।" ମାଲିକର ଏ ବିଚାର ଗଧ କିମିତି ଶୁଣିପାରି ଧାନେ ଘର ତାଙ୍କ ଅବଳରେ ଲୁଚିକରି ଘରୁ ବାହାରି ଗଲା । ଭାବିଲା, "ଯାଉଛି ସେଇ ରାଜଧାନୀକି ଯିବି ଯେ, ସେଠି ହେଲେ ଲୋକଙ୍କ ଆଗରେ ଗୀତ ବୋଲି ମୋ ପେଟ ମୁଁ ପୋଷି ପାରିବି ।"

ଇମିତି ବିଚାରି ସେ ଘରୁ ଖଣ୍ଡେଦୂର ଯାଇଛି, ଦେଖିଲା ବାଟ ମଝିରେ ଗୋଟିଏ କୁକୁର ଭାରି ହାଲିଆ ହୋଇପଡ଼ି ଖାଲି ଧକାଉଛି । ଗଧ ପଚାରିଲା, "ଭାଇ, କଣ ହେଲା କି ? ଇମିତି ଧକାଉଛ କିଆଁ ?" କୁକୁର କହିଲା, "ଆହା, କଣ କହିବି ଭାଇ, ମୋ କପାଳ ଇଏ । ଏତେଦିନ ମାଲିକର ସେବା କରି କରି ଆସିଲି, ହେଲେ ଶେଷକୁ ବୁଢ଼ା ହୋଇ ଦୁର୍ବଳ ହୋଇଗଲି, ସାଉ ପଛେ ପଛେ ଧାଇଁ ଆଉ ପାରଧି କରିପାରିଲି ନାହିଁ ବୋଲି ସାଉ ମୋ ମୁଣ୍ଡକୁ ଠେଙ୍ଗେଇ ଦେବ ବୋଲି ବସିଲା । ଆଉ କିଛି ଉପାୟ ନ ଦେଖି ଘରୁ ଧାଇଁ ଭାରି ଆସିଲି । ଆସିଲି ସିନା, କଣ କରି କିମିତି ପେଟ ପୋଷିବି, କିଛି ବୁଝି ହଉନି !" ଗଧ କହିଲା, "ଶୁଣ ଭାଇ, ମୁଁ ଗୋଟେ କଥା

ବଉଉଛ । ମୁଁ ଏବେ ରାଜଧାନୀକି ଯାଉଛି—ଗାଆକ ହେବି ବୋଲି । ତମେ ଯଦି ଧାଇଁ ମୋ ସାଙ୍ଗେ ଆସ । ଦେଖିବ, ଏ ଉପାୟରେ ଯଦି କିଛି ଅର୍ଜି ପାରିବ ।" ଗଧ କଥାରେ କୁକୁର ହଁ କଲାରୁ ଦୁହେଁ ସାଙ୍ଗ-ହୋଇ ଗୋଷ୍ଠିଏ ଗୋଟିଏ ଗଲେ ।

ଅଳ୍ପ ବାଟ ଯାଇଛନ୍ତି, ଦେଖିଲେ ବାଟ ମଝିରେ ଗୋଟିଏ ବିରାଡ଼ି ମୁହଁକୁ ଶୁଖେଇ ଭାରି ଦୁଃଖରେ ବସିଲା ପରି ବସିଛି । ଗଧ ପଚାରିଲା, "କି ଲୋ ମାଉସି, କଥା କଣ ? ଏମିତି ମନ ମାରି ଦେଇ କାହିଁ ବସିଚୁ ?" ବିରାଡ଼ି ଗୋଟେ ନିଶ୍ୱାସ ପକେଇ କହିଲା, "ହଁ, ମୋ କପାଳେ ଯା ଲେଖା ଥିଲା । ଜୀବନ ଉପରେ ବିପତ୍ତି ପଡ଼ିଲେ କା ମନରେ ସୁଖ ଥାଏ ? ମୂଷା ମାରି ମାରି ବୁଢ଼ୀ ହେଲି, ଦାନ୍ତରୁ ରୂମ ଝଡ଼ିଲା, ଆଉ ଧାଇଁ ଧପଡ଼ ପାରୁନି ନାହିଁ, ସବୁବେଳେ ଉଷୁମ ଦେଖି ଚୁଲି ମୁଣ୍ଡରେ ଶୋଇଲି, ଏଇ ତ ମୋର ଦୋଷ । ଏଥିକି ମୋର ସାଆନ୍ତାଣୀ ମତେ ଧରି ପାଣିରେ ବୁଡ଼େଇ ମାରି ଦେବେ ବୋଲି ବସିଥିଲେ । ମୋ କପାଳ ଭଲ ଥିଲା ବୋଲି ସେଠୁ ଖସି ଆସିଲି । ଏବେ କେମିତି ଜୀଇବି କିଛି ଉପାୟ ଦିଶୁନି ।" ଗଧ ସବୁ ଶୁଣି କହିଲା, "ଅଚ୍ଛା, ତେବେ ଆମ ସାଙ୍ଗରେ ଆସ, ମାଉସି ! ତମେ ତ ରାତିରେ ଭଲ ଗାଇପାର; ଆମେ ଦୁହେଁ ଗୀତ ଗାଇବାକୁ ଯାଉଚୁ । ଦେଖ ଭଲା, ଏ ଉପାୟ କଲେ ତମ କପାଳ ଫିଟିବ ପରା ।" ଏ କଥା ଶୁଣି ବିରାଡ଼ିର ମନ ଭଲ ମାନିଲା । ତହୁଁ ସେ ସେମାନଙ୍କ ସାଙ୍ଗରେ ମିଶିଗଲା । ଏ ତିନିହେଁ ସାଙ୍ଗ ହୋଇ ଯାଉ ଯାଉ ବାଟରେ ଜଣେ ଲୋକର ଖଳା ପଡ଼ିଲା । ସେ ଖଳା ଦୁଆରେ କଣ ହେଉଛି ନା, ଏକ କୁକୁଡ଼ା

ବସି ତା ଗଳେ ବଳେ ପାଟି କରି ବୋବାଉଛି । ଗଧ ତାକୁ ଦେଖି କହିଲା, "ବାହା ରେ, କେଡ଼େ ସୁନ୍ଦର ପାଟି କରି ଗାଇ ପାରୁଛ ! କଥାଟା କଣ ?" କୁକୁଡ଼ା କହିଲା, "କଣ କି, ଆଜ କାଲି ଋତୁରେ ଭଲ ପାଗ ହେବ ବୋଲି ମୁଁ ଜାଣିପାରି ଆନନ୍ଦରେ ଗୀତ ଗାଉଛି । ଲୋକଙ୍କର ମୁଁ ଏତେ ଉପକାର କରୁଛି, ଏତେ କଷ୍ଟରେ ଡ଼ାକି କହୁଛି, ହେଲେ, ମୋ ସାଆନ୍ତାଣୀ, ଆଉ ସେ ପ୍ରକାର ଟୋକା ମୋର ଉପକାର ନ ବୁଝି ମତେ ଆଉରି ଡ଼ରଉଚନ୍ତି ଯେ, କାଲି ମୋ ମୁଣ୍ଡ କାଟି କୁଣିଆ ଆସିଲେ ଖାଇବାକୁ ଦେବେ ।" ଗଧ ତା ଶୁଣି ଜିଭ କାମୁଡ଼ି ଦେଇ କହିଲା, "ଭଗବାନ ତା ନ କରନ୍ତୁ, ତା ନ କରନ୍ତୁ । ଭାଇ, ଆମ ସାଙ୍ଗରେ ଚାଲି ଆସ । ଏଠି ରହି ମୁଣ୍ଡ କାଟ ହେବା ଅପେକ୍ଷା ଏ ଭଲ ହେବ । କିଏ ଜାଣେ କପାଳରେ କଣ ଅଛି ? ଆମେ ଚାରିହେଁ ଯେବେ ଏକାଠି ମିଳି, ଏକା ସ୍ୱର ଲୟ ରଖି ଗୀତ ଗାଇ ପାରିବା, ତେବେ ଆମର ଅଚଳ ଅଖାଡ଼ା ଦାଣ୍ଡିଟିଏ ହବ । କଥା ମାନ ଆମ ସାଙ୍ଗରେ ଆସ ଭାଇ ।" କୁକୁଡ଼ା କହିଲା, "କିଛି ପରୁଆ ନାହିଁ । ମୋର ଯିବାକୁ ଖାଲି ମନ, ଚାଲ ।" ତହୁଁ ଗଧ, କୁକୁର, ବିରାଡ଼ି ଓ କୁକୁଡ଼ା, ଏ ଚାରିହେଁ ମହାମଉଜରେ ହସି ଖେଳି ଚାଲିଲେ ।

ସେଦିନ ସେ ସମସ୍ତେ ରାଜଧାନୀକି ଯିବେ ବୋଲି କଥା କରି ଥିଲେ; ମାତ୍ର ବାଟରେ ରାତି ହୋଇ ଯିବାରୁ ଆଉ ଯାଇ ପାରିଲେ ନାହିଁ । ପାଖରେ ଗୋଟିଏ ବଣକୁ ଯାଇ ରାତିକ ସେଠି ପୁହାଇବେ ବୋଲି ବିଚାରିଲେ । ସେ ବଣରେ ଗୋଟେ ବଡ ବରଗଛ ଥିଲା । କୁକୁର ଆଉ ଗଧ ଗଛମୂଳେ ରହିଲେ, ବିରାଡ଼ି ରାମ୍ପୁଡ଼ି କାମ୍ପୁଡ଼ି ହୋଇ ଚଢ଼ି ଯାଇ ଗୋଟେ ଡ଼ାଳରେ ବସିଲା । କୁକୁଡ଼ା ତ ଟିକିଏ ଉଡ଼ି ଯାଇଁ,

ଦିଏ ସେଠୁ ଏ ସମସ୍ତଙ୍କ ଠାରୁ ସୁଖରେ ଆଉ ନିଶ୍ଚିନ୍ତରେ ରହିବ ବୋଲି ଉଡ଼ି ଉଡ଼ି ଯାଇ ଗଛର ସବୁ ଉପର ଶିଖରେ ବସିଲା । କୁକୁଡ଼ାଙ୍କର ଗୋଟେ ଧାରଣା ଅଛି ଯେ, ସେମାନେ ଶୋଇବାକୁ ଯିବା ଆଗରୁ ଥରେ ଚାରି ଆଡ଼କୁ ଚାହିଁ ଦେଖିବେ କୁ'ଠି କଅଣ ଆପଦ ବିପଦ ଅଛି କି ନାହିଁ । ଏ ସିମିତି ଗଛ ଉପରେ ବସି ଚାରିଆଡ଼କୁ ଚାହିଁଲା ଦେଖିଲା, ଅଳ୍ପ ଦୂରରେ ଠାଏ କଣ ଶାଳି ଜକ ଜକ ଉଜ୍ଜଳ ଦିଶୁଛି ! ସେଠୁ ସେ ସାଥିଭାଇଙ୍କୁ ଡାକି କହିଲା, "ହେ ଭାଇ, ଖଣ୍ଡେ ଦୂରରେ ମୁଁ ଗୋଟେ ଆଲୁଅ ଦେଖି ପାରୁଛି, ନିଶ୍ଚେ ସେଠି ଗୋଟେ କଣ ଘର ଥିବ ।"

ଗଧ ସେଠୁ କହିଲା, "ତା ଯଦି ହୋଇଥିବ, ଚାଲ ଆମେ ଆମର ଏ ବସା ବଦଳେଇବା । ଆମର ବସାଟା କିଛି ଭଲ ହେଲା ନାହିଁ । ସେଠିକୁ ଗଲେ ଭଲରେ ରହନ୍ତେଇଁ ।"

ଏହା ଶୁଣି କୁକୁର କହିଲା, "ଭଲ କଥା, ଆଉ ମଧ୍ୟ ସିଠାକୁ ଗଲେ ମତେ ହାଡ଼ ଖଣ୍ଡେ କି ମାଉଁସ ଟିକଟେ ହେଲେ ମିଳି ପାରିବ ।"

ଇମିତି ବିଚାର ସ୍ଥିର ହୋଇ ସଭିଏଁ ତହୁଁ କୁକୁଡ଼ା ଯୋ'ଠି ଆଲୁଅ ଦେଖିଥିଲା, ସେଇ ଅଡ଼କୁ ଗଲେ । ଯେତିକି ଏମାନେ ସେ ଆଲୁଅ ପାଖକୁ ପାଖକୁ ଲାଗିଲେ, ଆଲୁଅଟା ସେତିକି ଆଉରି ଜକ ଜକ, ଆଉରି ବଡ଼ ଦିଶିଲା । ଶେଷକୁ ଯାଇ ସେ ଘର ପାଖେ ପହଞ୍ଚିଲେ । କଥାମଝିରେ ସେ ଘରଟା ହେଉଛି ପାଞ୍ଚ ଚୋରଙ୍କର ବସା ଘର । ଚୋରମାନେ ଗାଁ ଗଣ୍ଡାରୁ ଚୋରେଇ ଆଣି ସେ ଘରେ ରହନ୍ତି, ଖିଆ ପିଆ କରି ମହାସୁଖରେ ଥାନ୍ତି ।

ଏ ପକ୍ଷୀଙ୍କ ଭିତରେ ଗଧ ତ ସବୁଠୁ ଡେଙ୍ଗା, ଘର ଭିତରେ କଣ ହେଉଚି, କିଏ ଅଛି ବୋଲି ସିଏ ଆଗ ପଞ୍ଜରଠାକୁ ଗଲା, ଯାଇ ମୁହଁକୁ କରି ଭିତରକୁ ଚାହିଁଲା। କୁକୁଡ଼ା ପଚାରିଲା, "ଗଧଭାଇ! ଭିତରେ ତମେ କଣ ଦେଖୁଚ?" ଗଧ କହିଲା, "କଣ ଦେଖୁଚ? ଦେଖୁଚି ଭୋଜି ଟା ହେଉଚି; ଖିରି, ଖେଚଡ଼ି, ମାଛ, ମଣ୍ଡୁର, ପିଠାପଣା ସବୁ ଥାଳକୁ ଥାଳ ହୋଇ ବଢ଼ା ହୋଇଚି, ଆଉ, ଚୋରମାନେ ମହାମଉଜରେ ତାକୁ ସବୁ ଖାଇବାକୁ ବସିଚନ୍ତି।"

କୁକୁଡ଼ା କହିଲା "ବାଃ, ଏ ଘରଟା ଏକା ଆମ ପାଇଁ ଅସଲ ଘର।" ଗଧ ତା କଥା ଶୁଣି କହିଲା, "ହଁ, ଆମେ କିମିତି ଯେବେ ଏ ଭିତରେ ପଶି ରହିପାରନ୍ତେ, ତେବେ ଭଲ ହୁଅନ୍ତା।"

ତହୁଁ ଚାରି ସାଙ୍ଗଯାକ ଏକାଠି ବିଚାର କରି ବସିଲେ, କି ଉପାୟ କଲେ ଚୋରଙ୍କୁ ସେ ଭିତରୁ ତଡ଼ି ଦେଇ ହେବ। ବସି ବସି ଶେଷକୁ ଗୋଟେ ଉପାୟ ବାହାର କଲେ। ଗଧ କଣ କଲା ନା, ତାର ପଛ ଗୋଡ଼ ଯୋଡ଼ାକରେ ତଳେ ଭରା ଦେଇ ଆଗ ଗୋଡ଼ ଯୋଡ଼ାକୁ ଗୋଟେ ବଡ ଝଙ୍କର ଉପରକୁ ରଖି ଠିଆ ହେଲା। କୁକୁର ଉଠିଲା ଯେ, ଗଧର ପିଠି ଉପରେ ଠିଆ ହୋଇ ରହିଲା। କୁକୁରର ଦି' କାନରେ ଦି'ଗୋଡ଼, ଆଉ ଅଣ୍ଟାରେ ଦି'ଗୋଡ଼ ଦେଇ ବିରାଡ଼ି ଠିଆ ହେଲା। ଏ ସମସ୍ତଙ୍କ ଉପରେ, କୁକୁଡ଼ା ଉଡ଼ି ଉଡ଼ି ଯାଇ ବିରାଡ଼ି ଉପରେ ବସିଲା। ଆଗରୁ କଥା ହୋଇଥିଲା ଯେ, ଗୋଟେ କଣ ଇସାରା ଦିଆ ହେଲେ ସମସ୍ତେ ଏକାବେଳକେ ଏକା ତାଳ ଲୟ ରଖି ଗୀତ ବୋଲିବେ। ସମସ୍ତେ ଯେତେବେଳେ ସଜବାଜ ହୋଇ ଠିଆ ହେଲେ,

ଗଧ ଇସାରା ଦେଲା । ତହୁଁ ସମସ୍ତେ ଯୋଡ଼ା ଗୀତ ଆରମ୍ଭ କଲେ । ଗଧ 'ଗଁ' 'ଗଁ' ହେଲା, କୁକୁର 'ଭୌ' 'ଭୌ' ଭୁକିଲା, ବିରାଡ଼ି 'ମ୍ୟାଉଁ' ମ୍ୟାଉଁ' ଡୋବେଇଲା; ଆଉ କୁକୁଡ଼ା 'କକ୍ କକ୍' 'କକ୍ କକ୍' ହୋଇ କିରିକିଚ୍ଛିଆ ରଡ଼ ଛାଡ଼ିଲା ।

ଖାଲି ଏତିକିରେ ଗୀତ ବୋଲା ସରିଲା ନାହିଁ । ଗୀତ ସାଙ୍ଗେ ସାଙ୍ଗେ ନାଚ ଆରମ୍ଭ ହେଲା । ସମସ୍ତେ ଏକାବେଳକେ ଇମିତି ଏକ ମହା ଭୟଙ୍କର ଗର୍ଜନ କରି ଝରକା ଭିତରକୁ ଠେଲି ହୋଇ ପଶି ଗଲେ ଯେ, ପଞ୍ଜରର କାଠି ଫାଠି ଭାଙ୍ଗି ଗୋଟାକ ଉପରେ ଗୋଟେ ଯାଇ ଘର ଭିତରେ ଧୁମ୍‌ଦାମ୍ ହୋଇ ପଡ଼ିଲେ । ଚୋରମାନେ କେତେ ଥର ଗୀତ ଶୁଣିଥିଲେ, ହେଲେ, ଇମିତି ଗୀତ କେବେହେଁ ଶୁଣି ନ ଥିଲେ । ତାଙ୍କୁ ପ୍ରତେ ହେଲା, ସତେ ଯିମିତି କୁଆଡ଼ୁ ଏକ ଭୂତ ଆସି ଘର ଭିତରେ ହାବୁଡ଼ିଛି । ଭୟରେ ତାଙ୍କର କଲିଜା ପାଣି ହୋଇଗଲା । କିଏ କୁଆଡ଼େ ପଡ଼ି ଉଠି ପ୍ରାଣ ଭୟରେ ପଳେଇଲେ ଯେ, ଯିବା ବାଟରେ ଯିମିତି କି ଆଉ ଫେରି ଚାହିଁଲେ ନାହିଁ ।

ଚୋରମାନେ ପଳେଇଲାରୁ ଏମାନେ ଗୋଟେ ମହାଘୋର ବିପତ୍ତିରୁ ରକ୍ଷା ପାଇଲେ । ଘରଟା ନିଛାଟିଆ ହୋଇଗଲା ! ତହୁଁ ଚୋରେ ଯାହା ଦରଖିଆ ହୋଇ ଅଇଁଠାରେ ଛାଡ଼ି ଯାଇଥିଲେ, ତାକୁ ଏମାନେ ଖାଇବାରେ ଲାଗିଲେ । ବାଉଳ ବାଉଳ ହୋଇ ମେଞ୍ଚା ମେଞ୍ଚା କରି, ହତା ହତା କରି, ବୁନ୍ଦା ବୁନ୍ଦା କରି ଯିଏ ଯେତେ ବେଗେ ପାରେ, ସେତେ ବେଗେ ଖାଲି ଗିଳି ଦେଇ ଗଲେ । କିଏ କାହାକୁ କହିବାକୁ କି ଶୁଣିବାକୁ ଫୁରୁସତ୍ ତର ସହିଲା ନାହିଁ । ସତେ ଯିମିତି କି ଆଉ ମାସକ ଯାଏ ଖାଇବେ

ବୋଲି ସିଏ ବସ୍ତୁର ନଥିଲେ । ପେଟେ ପେଟେ ଖାଇସାରି ଫୁଁ ଫାଁ ହେଲେ, ତହୁଁ ସିଏ କରେଇ ଥାନ ଖୋଜିଲେ, କିଏ କୁଠି ଶୋଇବ ବୋଲି । ଯାହାକୁ ଯୋଉଁ ଥାନ ପାଏ, ସିଏ ସେଇଠି ଶୋଇଲା । ଗଧ ଗଲା ଯେ, ଗୁହାଳରେ ପାଳ ଗୋଛ ଉପରେ ଶୋଇଲା କୁକୁର ଇରୁଣ୍ଡି ମୁଣ୍ଡକୁ ପଛ ଖଣ୍ଡିକରେ ଲମ୍ବ ହୋଇ ପଡ଼ିଗଲା । ବରାଡ଼ ଚୁଲି ମୁଣ୍ଡରେ ତତଲା ପାଉଁସ ଉପରେ ଶୋଇ ଜୁଷୁମୁ ଚାଲିଲା । କୁକୁଡ଼ା ଉଡ଼ି ଯାଇ ଗୋଟେ ଧୁଲାରେ ବସି ଘୁମେଇଲା ।

ସମସ୍ତେ ତ ସେ ଦିନକଯାକ ବାଟ ଚାଲି ଚାଲି ହାଲିଆ ହୋଇ ଯାଇ ଥିଲେ ; ଯିମିତ ଆଖି ବୁଜିଲେ ସିମିତ ନଘୋଡ଼ ନିଦ ଲାଗିଗଲା ।

ଏଣେ ଚୋରମାନେ ଡାଟକା ହୋଇ ଜଣ ଭିତରେ ଲୁଚିଥିଲେ । ଅଧରାତିକି, ଯେତେବେଳେ ଜଣା ଗଲାଣି, ସବୁଆଡୁ ସୋର ଶବଦ ଲାଗିଗଲା, ଘର ଭିତରେ ଆଉ ଦୀପ ଅଲୁଅ ଦିଶିଲା ନାହିଁ, ସଦାକୁ ଅସି ବସ୍ତୁରବେ, "ଆମେ ମାହାଲିଆ ଏତେ ଅଡରିଛେ ହେଇ ପଳେଇ ଆଇଲେ, କଥାଟା କିଛି ଜଣା ଗଲାନି ।" ତାଙ୍କ ଭିତରେ ଜଣେ ଭାରି ସାହସିଆ ଚୋର ଥିଲା । ସିଏ ସେଠୁ ଅଣ୍ଟା ଭିଡ଼ି ଉଠିଲା, "ଦେଖି, ଘରଭିତରେ କଣ ହୋଉଚି ଦେଖିବା ।" ସ୍ତ୍ରୀ ବସ୍ତୁର ଦୁଆରମୁହଁକୁ ଯାଇ ଶୁଣିଲା କିଛି ଦିଶୁ ନାହିଁ; ସବୁ ଘର ନିଛଟିଆ ହୋଇ ପଡ଼ିଚି । ତହୁଁ ସିଏ ଥିର୍ ଥିର୍ ପାଦ ପକେଇ ଚେପେଇ ଘରକୁ ଗଲା । ଯାଇ ଏ କଣ ସେ କଣ ଦରାଣ୍ଡୁ ଦରାଣ୍ଡୁ ଖଣ୍ଡେ ଚୋଲ ହାତରେ ପଡ଼ିଲା । ଏ ଯିବାର ବରାଡ଼ ଉଠି ଜାଣିଲାଣି ବରାଡ଼ ଆଖି ତ ଅନ୍ଧାରରେ ଝାଲି ନିଆଁ ଜଳିଲା ପରି ଜକ୍ ଜକ୍ ଦିଶେ, ଏ ଶୋଲ ଖଣ୍ଡେ ଜାଳି ଦୀପ ଲଗେଇବ ବୋଲି ଚୁଲିରେ ନିଆଁ

ପଛୁ କି ନାଇଁ ଘୁଞ୍ଚି ଘୁଞ୍ଚି, ଚୁଲମୁଣ୍ଡରେ ବାଘଡ଼ର ଅଗି ଦା'ଠା ଜକଜକ ଦିଶିଲା । ଗ୍ରେଗଠା ଭାବିଲା, 'ହେଇ ଧା'ଗଣ୍ଡ ରଞ୍ଜାଆଁ ପଡ଼ୁଚି ।' ତାହୁଁ ସିଏ ଥରକାନ ହୋଇ ଶାଗୁଣା ଧରି ଦେଇ ନାଆଁରେ ଲାଗେଇ ଦାନ୍ତ ବୋଇଲା ତେଳକୁ ବାଘଡ଼ ତ ଏତେ କଥା ଜାଣେ ନାଇଁ, ମାଙ୍କଲା ଖେପାଏ ଯେ, ତା ମୁହଁରେ ଯାଇ ଗଳିଲା । ଗଳିଲା ଯିମିତି ନାଗ ଲାଙ୍ଗୁଳ ଫୁଙ୍କିଲା ମୁହଁଠାକୁ କାମୁଡ଼ି ଦେବାକୁ ପଡ଼ିକଲା । ଗମ୍ଭୀରା ଖାଇ ଚୋର ପ୍ରାଣ କାକୁଡ଼ିରେ ଥର ହର ଧାଇଁ ପଳେଇଲା ବେଳକୁ ମଝି ଘର ଦୁଆରମୁହଁରେ କୁକୁର ଶୋଇଚି । ସିଠି ଯିମିତି ମାଡ଼ ପାଦ ମାଡ଼ିଚି, କୁକୁର ଉଠି ଗୋଡ଼କୁ ଜାବୁଡ଼ି ଜୋରରେ ଧରିଲା । ସେଇ ଅନ୍ଧାରରେ ଉପ ଝେଟେଇ ଝେଟେଇ ଧରି ଧାଇଁ ଗୁହାଳ ଭିତରେ ପଶି ଖସି ପଳେଇବ ବୋଲି ଭାବିଲା । ଗଧ ତ ପାଳ ଗୋଛାରେ ଆଉଜେଇ ଗଡ଼ୁଥିଲା, ଉଠି ମାରିଲା ଲାତ ଯେ ଚୋରଟା ଛିଟିକି ହେଇ ଯାଇ ଦଶ ହାତ ଦୂରରେ ପଡ଼ିଲା । ଏ ସମୟରେ କୁକୁଡ଼ା ଉଡ଼ି ଉପରକୁ ଯାଇ ପଥର ଯଡ଼ି କରି ତା ଦେହ ଉପରେ କକ୍କାଁଏ ପାଟିରେ ତାକୁ ଖୋଚେଇଲା ।

ଚୋରକୁ ଆଉ ବାଟ ଘାଟ ଦିଶୁ ନାଇଁ । ସିଏ କିମିତି ପ୍ରାଣ ଘିନି ସେ ଘରୁ ଆସିବ ବୋଲି ଏଣ୍ଡା ନାଣ୍ଡା ହେଉ ଥାଇଁଚି । ଆଉ ପଛକୁ ନ ଗୁହିଁ, ଜୋରରେ ବେଳକୁ ଭଙ୍ଗା ନଳ ତଳ ହେଇ ଯୋଉଠି ସାଥି ବାଲା ଥିଲେ, ସେଠି ଯାଇ ହେଞ୍ଚିଲା । ତା ପାଟିରୁ ସଳଖ ହେଇ କଥା ଭାରୁ ନ ଥିଲା । ସରଦାର ପଚାରିଲେ, "କଣ ରେ, କଣ ଦେଖିଲୁ ?" ଏ ଦଣ୍ଡକୁ ଦଣ୍ଡ ଥକା ମାରି ମାରି କହିଲା, "ଓହୋ, ପ୍ରାଣରେ ଆଉ ବଞ୍ଚି କରି ଆସିବା ବୋଲି ଭରସା ନ ଥିଲା—ଜୀଇଗଲା । ଇମିତି

ଏକ କାହାଣୀ ଅଛି ସେ ଘରେ ହାଲୁଡ଼ିଚ, ତାର ସେ ଚୋର ଗୋଟିଏ ଗୋଟିଏ ଛୁରୀ ଧରି ଦଶୁଆ ଅଙ୍ଗୁଠିମାନ, ସେ ଥରେ ମୋ ମୁହଁଟାକୁ ଧରି ତମ୍ବୁଡ଼ି ଲଦାରେ ପକେଇଲା, ନାକୁଟାକୁ କାମୁଡ଼ି ନେଇଗଲା ! ଆଉଥରେ—ପୁଣି ଏକ ମଣିଷ ସେ ମନ୍ଦିର ଦୁଆରେ ଛୁରୀଟେ ଧରି ଲୁଚି କରି ବସିଥିଲା । ମୋ ଗୋଡ଼କୁ ଦେଖେଇ ଚୋଟେ ପକେଇଲା ଯେ, ଦେଇଛି ରକ୍ତଧାର ଲାଗିଛି । ସ୍ୱା ଅଳ୍ପରୁ ସେ ଶ୍ମଶାନ ଅଡ଼କୁ ଗଲା ଲେଜକୁ ସେଠି ଚୋଟେ ବାଣ୍ଟ ଖୋଲିଚ । ସେ ଏ ତା ଏଟିକାରେ ମଟେ ନାର୍ଦ୍ଦିମ ମାହାରେ ପକେଇଲା ଯେ, ଓଳିଗଲା ଦେଇ ଢଳି ପଡ଼ିଲା । ସେଥର ଭାରି ଅଇଲାବେଳକୁ ଓହ୍ଲାରେ ଗୋଟେ ଭୂତ ବସିଥିଲା । ମତେ ଦେଖି ସେ ପାଟି କରି କରି କହିଲା, 'ମାର ସ୍ୱକୁ ମାର, ଏ ଚୋରକୁ ମାର ମାର'।" ସ୍ୱାକହ୍ନ ଚୋରଟା ଅଚେତ ହୋଇ ପଡ଼ିଗଲା ।

ସେଦିନଠୁ ଚୋର ସେ ଘରର ସୀମା ପର୍ଯ୍ୟନ୍ତ ମାଡ଼ିବାକୁ ସାହସ କଲେ ନାହିଁ । ଏ ଚାରିଜଣ ଅଖଡ଼ାବାଲା ସେଠି ମହାସୁଖରେ ଖାଇ ପିଇ ରହିଲେ । ମୁଁ ଜାଣେ ଏବେ ମଧ୍ୟ ସେ ଏ ଅଛନ୍ତି । ତମେ ଯେବେ କେବେ ଓରେ ଯାଆନ୍ତ, ଗୀତ ଶୁଣି ଆସନ୍ତ !




**ରାମ** ଦିନେ ତା ଭଉଣୀ ଉମାକୁ ଡାକି କହିଲା, "ଉମା ! ଆମ ବୋଉ **ଆଖି** ବୁଜିଲା ଦିନଠୁଁ ଆମେ ବଡ଼ ଦୁଖରେ ରହୁଚେଁ । ଆମ

ସାବତ ମା ଆମ୍ଭକୁ ଦେଖି ପାରୁନି, ଅଉ ଯାଉଣୁ ଆସୁଣୁ, ଗାଲ କୁଟି ପକାଉଛି। ଆମେ ଖାଇଲେ ପିଇଲେ ତା ଦେହ ସହୁନି। ଆହା! ବୋଉ ଯେବେ ଜାଣିଥାନ୍ତା ଆମେ କି ଦୁଃଖରେ ଅଛେଁ, ତା ମନ କଅଣ ହୋଇଥାନ୍ତା! ଚାଲ, ଆମେ ଦୂରୁ ଭାଇ ଯିବା।" ଏଇପରି ବିଚାର ସ୍ଥିର ହୋଇ ଦୁହେଁ ଯାଙ୍କ ଘରୁ ବାହାରି ଗଲେ; ସନ୍ଧ୍ୟା ବେଳକୁ ଯାଇ ଏକ ଅଗ୍ନାଗ୍ନ ବନସ୍ତରେ ପହଞ୍ଚିଲେ! ବାଟ ଚାଲି ସେହିଙ୍କି ଭାରି ବାଧି ଯାଇଥିଲା; ତେଣିକରେ ଗୋଟିଏ ଗଛମୂଳେ ଶୋଇ ପଡ଼ିଲେ।

ଆର ଦିନ ସକାଳ୍ ଉଠିଲା ବେଳକୁ ବେଳ ପହରେ ହୋଇ ଗଲାଣି। ରାମ କହିଲା, "ଉମା, ମତେ ଭାରି ଶୋଷ କରୁଛି, ଚାଲ ସେ ନଈରେ ଯାଇ ମନ୍ଦଏ ପାଣି ପିଇବା! ନଈ କୂଳରେ ପହଞ୍ଚି ରାମ ପାଣିକି ହାତ ବଢ଼ାଇଲା ବେଳକୁ ଉମାକୁ ଶୁଭିଲା ଯେ, ପାଣି ଭିତରେ କିଏ କହୁଛି, "ଯିଏ ଏ ପାଣି ପିଇବ ସେ ବାଘ ହୋଇଯିବ।" ସେଥି ଉମା କହିଲା, "ଭାଇ, ପିଅନି, ପିଅନି। ପିଇଲେ ତମେ ବାଘ ହୋଇ ମତେ ମାରି ପକେଇବ ସିନା!" ରାମ ତଣ୍ଟି ଶୁଖି ଯାଉଥିଲେ କଅଣ ହେବ, ସିଏ ଆଉ ପିଇଲାନି। ଦୁହେଁ ସାଙ୍ଗ ହୋଇ ପୁଣି ବଣରେ ବଣରେ ଚଲେ। ଯାଉ ଯାଉ ଆଉ ଗୋଟିଏ ନଈ ପଡ଼ିଲା। ସେ ନଈ କହୁଛି ଯେ, "ଯିଏ ମୋ ପାଣି ପିଇବ ସିଏ ଗଧିଆ ହୋଇଯିବ।" ଉମା ହାତଜୋଡ଼ି ତାର ପିଇବାକୁ ମନା କଲାରୁ ଭାଇ ଆଉ ପିଇଲାନି। ହେଲେ କହିଲା ଯେ, "ଆଉ ନଈ ପଡ଼ିଲେ ତୁ ଯାହା କହ ପଛକେ ମୁଁ ନିଶ୍ଚେ ପିଇବା।"

ଯାଉ ଯାଉ ବାଟରେ ପୁଣି ଆଉ ଗୋଟେ ନଈ ପଡ଼ିଲା। ସେ ନଈ କହୁଛି ଯେ, "ଯିଏ ମୋ ପାଣି ପିଇବ ସିଏ ହରଣ ହୋଇ-

ଥିବ । ” ଝିମା ଏହା ଶୁଣି ଖାଇବା ମନା କଲା, ହେଲେ ହରିଣ ନ ମାନି ପିଇ ଦେଲାରୁ ସତକୁ ସତ ହରିଣଟିଏ ହୋଇଗଲା । ଝିମା ଏ କଥା ଦେଖି ବେଳେ କାନ୍ଦିଲା । ପଛକୁ ଆପଣା ବେକରୁ ସୁନା ମାଳ କାଢ଼ି ହରିଣ ବେକରେ ବାନ୍ଧି ଦେଲା, ଆଉ ତାକୁ ଓଟାରି ଓଟାରି ଘନ ବଣେ ଗଲା ।

କେତେ ବାଟ ଗଲା ପରେ ଗୋଟିଏ କାହାର କୁଡ଼ିଆ ଘର ଦେଖିଲା ଯେ, ସେ କୁଡ଼ିଆରେ ମଣିଷର ସୋର ଶବ୍ଦ ନାହିଁ । ଝିମା ସେଇଠି ହରିଣକୁ ଧରି ରହିଲା । ଦିନ ସକାଳୁ ଯାଇ ବଣ ଭିତରୁ ଆପଣା ପେଇଁ ଫଳମୂଳ ଆଣେ, ଆଉ ହରିଣଟି ପେଇଁ ଆଣେ କଅଁଳ ନାଳ, ଘାସ ପତର ଆଉ କଅଁଳ ଡଙ୍କ । ହରିଣ ସୁଖରେ ସବୁ ତା ହାତରୁ ଛଡ଼େଇ ଖାଏ, ଆଉ ତା ଗୋଡ଼ପଟେ ଲେଉଟି ଥାଏ । ସନ୍ଧ୍ୟାବେଳେ ଶୋଇଲା ବେଳକୁ ଝିମା ହରିଣ ଉପରେ ମୁଣ୍ଡ ଦେଇ ତାକୁ ସାଙ୍ଗେ କରି ଶୁଏ ।

ଏମିତି କେତେ ଦିନ ରହିଲା ପରେ, ଦିନେ ସେ ରାଇଜର ରଜା ଆଇଲେ ପାରିଧିକି । ଶିଙ୍ଗା ବାଇଦ ବାଜିଲା, ଡଗ ବାଜିଲା, କୁକୁର ଭୁକିଲେ । ଏହା ଶୁଣି ହରିଣର ମନ ଉଚାଟ ହେଲା । ସିଏ କହିଲା, “ଝିମା ଲୋ, ମତେ ଛାଡ଼ି ଦେ; ମୁଁ ଯାଇ ଦେଖିବି କଣ ହେଉଛି ।” ଝିମା ଥରେ ଦି ଥର ନାହିଁ କଲା । ପଛକୁ କହିଲା, “ଯିବୁ ତେବେ ଯା, ହେଲେ, ସଞ୍ଜ ବେଳକୁ ଲେଉଟି ଆସିବୁ । ମୁଁ ଦୁଆର କିଳି ଦେଇଥିବି । ତୁ ଠିଆ ହୋଇ ଡାକିବୁ—ଝିମା, ଦୁଆର ଫିଟା । ମୁଁ ତୁରନ୍ତ ଦୁଆର ଫିଟେଇ ଦେବି ।” ଝିମା ପାଟିରୁ କଥା ସରୁ ନ ସରୁଣୁ, ହରିଣ କୁଡ଼ିଆରୁ ଡେଇଁ ଚାଲିଗଲା । ଯାଇ ବଣ ଭିତରେ ହାଜର ହେଲା ।

ରଜା ହରଣକୁ ଦେଖି ଗୋଡ଼େଇଲେ । ହେଲେ, ଧରି ପାରିଲେ ନାହିଁ । ହରଣ କୁଆଡ଼େ ବଣ ବୁଦା ଡେଇଁ ଲୁଚିଗଲା, ଆଉ ତା ପତ୍ତା ମିଳିଲା ନାହିଁ; ସଞ୍ଜବେଳକୁ ଆସି କୁଡ଼ିଆ ଦୁଆରେ ହାଜର ହେଲା । ଭଉଣୀ ଯେମିତି କହିଥିଲା ଡାକିଲା, "ଉମା, ଦୁଆର ଫିଟା ।" ଉମା ଦୁଆର ଫିଟେଇ ଆନନ୍ଦିତ ହୋଇ ହରଣକୁ ଘରକୁ ନେଇଗଲା ।

ଆରଦିନ ପୁଣି ସକାଳୁ ରଜାଙ୍କ ପାଖରୁ ସେମିତି ବାଇଦ ବାଜିଲା, ତୂରୀ ବାଜିଲା, କୁକୁର ଭୁକିଲେ । ହରଣ କହିଲା, "ଉମା, ଦୁଆର ଫିଟେଇ ଦେ, ମୁଁ ଯିବି ।" ଉମା ଦୁଆର ଫିଟେଇ ଦେଇ କହିଲା, "ସଞ୍ଜବେଳକୁ ଫେରି ଆସିବୁ ।" ରଜା ହରଣକୁ ଦେଖିଲାକ୍ଷଣି ପୁଣି ଗୋଡ଼େଇଲେ । ହେଲେ କଣ ହେବ, ଗୋଡ଼େଇ ପାରୁଚନ୍ତି କେତେବେଳେ ? ସକାଳୁ ସଞ୍ଜ ଆସି ହେଲା, ହରଣ ସେମିତି ବଣଯାକ ଧାଇଁଚି । ପଛକୁ ତା ଗୋଡ଼ରେ ପଡ଼େ କାଣ୍ଡ ବାଜି ଗଲରୁ ସିଏ ଛୋଟେଇ ଛୋଟେଇ ଘରକୁ ପଳେଇ ଆଇଲା । ରଜା ପଛେ ପଛେ ଗୋଡ଼େଇଲେ । ଆଉ ଶୁଣିଲେ ସେ ହରଣ କହୁଚି, "ଉମା, ଦୁଆର ଫିଟା ।" ଉମା ଦୁଆର ଫିଟେଇ ହରଣକୁ ଘରକୁ ନେଇଗଲା । ରଜା ସେ ଦିନ ବାହୁଡ଼ି ଗଲେ ।

ହରଣର ଗୋଡ଼ ଜଖମ ହୋଇ ଯିବାର ଦେଖି ଉମା ଆଖିରୁ କେତେ ଲୁହ ବୋହିଗଲା । ସିଏ ଗୋଡ଼ରୁ ରକତ ପୋଛି ସଫାକରିଲା, ଆଉ ଜଖମ ଥାନରେ ବଣପେଚଟା ଘାସ ଚମ୍ପୁଡ଼ି ପକେଇଦେଲା । କହିଲା, "ଏବେ ଶୋଇ ପଡ଼, କାଲିକି ଭଲ ହୋଇ ଯାଇଥିବ ଯେ ।" ହରଣ ନିଘୋଡ଼ ନିଦରେ ଶୋଇ ପଡ଼ିଲା । ଆର ଦିନ ସକାଳୁ ଉଠି ଦେଖେ, ହରଣକୁ ତା ଗୋଡ଼ରେ ପ୍ରାୟ ପୀଡ଼ା ଆଉ କିଛି ନାହିଁ । ହେଲେ, ପୁଣି ପାଖରୁ ଲାଗିଲା । ବାଇଦ, ତୂରୀ ବାଜିଲା, କୁକୁର ଭୁକିଲେ । ହରଣ କହିଲା, "ଉମା, ଦୁଆର ଫିଟେଇ ଦେ, ମୁଁ ଯିବି ।" ଉମା ଆଜ

ଆଉ ଦୁଆର ଫିଟେଇବ କେତେବେଳେ ? ଉମାରୁ ମାନିଲା ନାହିଁ । ହରିଣ ଏକା ରାଗ ଧରି ବସିଲା । କହିଲା, "ମତେ ଛାଡ଼ି ନ ଦେଲେ ମୁଁ ପ୍ରାଣ ଦେଇଦେବି ।" ସେ ଦିନ ଉମା କେତେ କାନ୍ଦିଲା, କାନ୍ଦି କାନ୍ଦି ଦୁଆର ଫିଟେଇଦେଲା । ହରିଣ ଏକା ଡିଆଁକେ ଯାଇ କୁଆଡ଼େ ବଣ ଭିତରେ ହାଜର ହେଲା । ରଜା ତାକୁ ଦେଖି ଭାରି ଆନନ୍ଦ ହେଲେ । ହେଲେ, କଅଣ ହେବ, ସେତେ ଧନ୍ଦି ଧାଇଁ ଗୋଡ଼ାଇଲେ, ତାକୁ ଧରି ପାରିଲେ ନାହିଁ । ପଛକୁ ବେଳ ବୁଡ଼ି ଆସିଲା । ରଜା ହରିଣକୁ ଖୋଜି ସେ କୁଡ଼ିଆ ଦୁଆରେ ଯାଇ ହାଜର ହେଲେ । ସିମିତି କହିଲେ, "ଉମା ଦୁଆର ଫିଟା ।" ଉମା ଧଡ଼ ଧଡ଼ ହୋଇ ଆସି ଦୁଆର ଫିଟେଇ ଦେଖେ ତ, ହରିଣ ଫେରିଣ କେଉଁଠି ନାହିଁ, ଆଉ କଅଣ ହେଲାଣି ନା, କେବଳ ରଜା ଥାଇ କୁଡ଼ିଆ ଭିତରେ ଉଭା । ଉମାକୁ ଭାରି ଡର ମାଡ଼ିଲା । ହେଲେ, ରଜା ତାକୁ କାଉଁଳେଇ ଆଉଁସେଇ ଡାକିଲେ, ଆଉ କହିଲେ, "ତୁ ଆ ଆମ ରାଜଘରକୁ ଯିବୁ, ଆମର ରାଣୀ ହେବୁ ।" ଉମା ଅମଙ୍ଗ ହେଲା ନାହିଁ । ଆଉ ତା ହରିଣଟିକି ସାଙ୍ଗରେ ନେବ ବୋଲି ଜୋର କଲାରୁ ରଜା ହଁ କଲେ । ସେଇଦିନ ବେଳକୁ ହରିଣ ବଣରୁ ଡେଇଁ ଡେଇଁ ଆସି ପହଞ୍ଚିଲା । ରଜା ସେ ଦୁହିଙ୍କି ଧରି ଆପଣା ରାଜଘରକୁ ଗଲେ । ତା ପରଦିନ ଉମା ସାଙ୍ଗରେ ତାଙ୍କର ବାହାଘର ହେଲା । ଉମା ତା ଉପରେ ଲଦେଇ ଥିବା କଥା ସାରା ସବୁ କହିଗଲା । ରଜା ତା ସାବତ ମାକୁ ଡକେଇ ଆଣି ତାକୁ ତଳ କଣ୍ଟା ଉପର କଣ୍ଟା କରି ପୋତେଇ ପକେଇଲେ । ଉମ ଭାଇଟି ସାବତ ମା ଦୋଷରେ ହରିଣ ପାଲଟି ଯାଇଥିଲା ; ସିଏ ମରି ଗଲାରୁ ପେଟରେ ମଣିଷ ହୋଇଗଲା । ଭାଇ ଭଉଣୀ ଆନନ୍ଦମସ୍ତ ହେଲେ; ରଜାଙ୍କ ନଅରରେ ରହିଲେ । ମୁଁ ଗଲାରୁ କଥା କହିଲେ ନାହିଁ ।






**ଗୋଟିଏ** ସାଧବ ଥାଏ ଯେ, ତାର ତିନି ଝିଅ । ଦିନେ ସାଧବ ବଣିଜ କରି ଗଲାବେଳେ ସବୁ ଝିଅଙ୍କୁ ଡାକି ପଚାରିଲା ଯେ, କା' ପାଇଁ କଣ ଆଣିବି । ବଡ଼ ଝିଅ କହିଲା, ତା ପାଇଁ ମୁକୁଟ **ଆଣିବାକୁ**; ମଝିଆ ଝିଅ ଅଲଙ୍କାର ପାଇଁ କହିଲା । ଆଉ ସାନ ଝିଅ କହିଲା, "ବାପା, ମୋ ପାଇଁ ଗୋଟିଏ ଗୋଲାପ ଫୁଲ ଆଣିବ ।" ସାଧବ ନୌକାରେ ବସି ଚାଲିଗଲା । ଫେରିଲା ବେଳକୁ ସେ ବଡ଼ଝିଅଙ୍କ ପାଇଁ ମୁକୁଟ ଆଉ ଅଳଙ୍କାର ଧରିଲା । ହେଲେ, କେତେ ଖୋଜା କଲା, ଆଉ ସାନ ଝିଅଟି ପାଇଁ ଗୋଟିଏ ଗୋଲାପ ଫୁଲ ମିଳିଲା ନାହିଁ । ଯେଉଁଠି ଯାଇ ପଚାରିଲ ସମସ୍ତେ ହସିଲେ । ମାଘମାସ ଜାଡ଼ରେ ପୁଣି ଗୋଲାପ ଫୁଲ ଫୁଟେ ? ଯିଏ ଶୁଣିଲା ବାପ୍ପା ବୋଲି କହିଲା । ସାଧବ ମନରେ ଭାରି ଦୁଃଖ କଲା, ଝିଅଟି ପାଇଁ ଘର ଗୋଲାପ ଫୁଲଟେ ଆଣି ପାରିଲା ନାହିଁ । ଏମିତି ବୁଲୁ ବୁଲୁ ହେଇ ଯାଉ ଯାଉ ଏକ ନଅର ଦେଖିଲା । ନଅର ଚାରିପାଖ ଯାକ ଏକ ବଗିଚା । ସେ ବଗିଚାରେ କଣ ହୋଇଛି ନା, ଅଧକେ ଶୀତ ଦିନ, ଆଉ ଅଧକେ ଖରା ଦିନ । ସେଠେଇଁ ଗୋଲାପ ଫୁଲରେ ଗଛ ଯାକ ଭରି ପଡ଼ିଛି । ଆଉ ଅଧକରେ ଘାସ ଗଛଟିଏ କି ପତ୍ରଟିଏ ସୁଦ୍ଧା ନାହିଁ । ସାଧବ ଦେଖି ଭାରି ଆନନ୍ଦ ହେଲା । ଯାଇ ଗୋଟିଏ ଫୁଲ ଛିଣ୍ଡେଇ କରି ଆଣିଲା ବେଳକୁ କୁଆଡ଼ୁ ଆସି ଏକ ସିଂହ ହାଜର ହେଲା । ଗର୍ଜ୍ଜନ ଗର୍ଜ୍ଜନ କରି କହିଲା, "ମୋ ବଗିଚାରୁ ଫୁଲ ନେଉଛ କିଏ ରେ ?" ସିଂହ କହି ସାଧବକୁ ଖାଅନ୍ତାରେ ଗୋଡ଼ା

ପଟଣ ଗିଳିବାକୁ ବାହାରିଲା । ଯେତେ ଜୀବନ ବିକଳରେ ସାଧବ ବହୁତ କାକୁତି ମିନତି କରିବାରୁ ସିଂହ କହିଲା, "ହଉ, ଯିବୁ ଯେ, ଘରକୁ ଗଲାକ୍ଷଣି ଆଗ ଯାହା ଦେଖିବୁ ମତେ ଆଣିଦବୁ ।" ସାଧବ ବିଚାରିଲା, ଘରକୁ ଗଲାବେଳେ ତା ମାଈକିନିଅ ଆସି କରି ଅଧବାଟରେ ଠିଆ ହୋଇଥାଏ, କାଳେ ତାକୁ ଯଦି ଆଗ ଦେଖି ପକେଇବ ବୋଲି ତା ମନରେ ଭାବନା ହେଲାରୁ ସେ ସିଂହକୁ ନାହିଁ କଲା । ହେଲେ କଣ ହବ, ତା ସଙ୍ଗରେ ଯୋଉ ନଉକାଗୁଡ଼ା ଥିଲା, ତା କଳିଜା ଟେକିଦେଲାକୁ ଭୟରେ ପାଣି ଫାଟିଗଲାଣି । ସିଏ କହିଲା, "କାହିଁକି ନାହିଁ କରୁଛ ଧାଇଆଲୋ ? ଦେହରେ କି କୁକୁରକେ କଣ ଦେଖିବ ପରା ! ହଁ କରି-ଦିଅ ।" ତା କଥା ଶୁଣି ସାଧବ ହଁ କରିଦେଇ ଫୁଲ ଧରି କରି ଘରକୁ ଆସିଲା ।

ଘରେ ଯାଇ ଦେଖିଲା ବେଳକୁ ତାକୁ ତା ସାନ ଝିଅଟି ଆସି ଅଧ ବାଟରେ ହାଜର । ତାହାକୁ ଦେଖି ସିଏ ଭାରି ଆନନ୍ଦ ହେଲା, ଆଉ ଗୋଲାପ ଫୁଲଟି ଧରି କେତେ କଉତୁକ କଲା । ତା ଦେଖି ସାଧବ ଆଖିରୁ ଲୁହ ବୋହିଗଲା । ଝିଅ ପଚାରିଲାରୁ ସିଏ ତାକୁ କଥା ସବୁ ଫିଟେଇ କହିଲା । ହେଲେ, ଝିଅକୁ କହିଲା, "ସେ ସିଂହ ଯାହା କରିବ କରୁ, ତୁ ଯିବୁ ନାହିଁ ଲୋ ଝିଅ !" ଝିଅ ଏ କଥା ଶୁଣି ବାପାକୁ ବୁଝେଇ କରି କହିଲା, "ନ ଗଲେ ଭାରି ଅଧର୍ମ ହବ । ମୁଁ ଯାଉଛି, ସିଂହକୁ କୁହା ଯୋଉ କରି ଆସିବି । ସିଏ ମତେ ଛାଡ଼ିଦବ ଯେ ! ତମେ କିଛି ମନାଦୁଃଖ କର ନାହିଁ ।"

ଆରଦିନ ସକାଳୁ ଉଠି ଝିଅ ବଣସ୍ତକୁ ଗଲା । ସେ ସିଂହ କିଏ ହୋଇଥାଏ ନା, ଏକ ରଜାପୁଅ ଶାପ ପାଇ ସିଂହ ପାଲଟି ଯାଇଥାଏ

ଯେ ଦିନଯାକ ବଣରେ ସିଂହ ଶିକାର ବୁଲୁଥାଏ, ରାତି ହେଲାରୁ ପୁଣି ମଣିଷ ରୂପ ହୋଇ ଗାଧରେ ବସେ, ଦରବାର କରେ । ସାଧବ ଝିଅ ସିଦିନ ପହଞ୍ଚିଲା ବେଳକୁ ରାତି ହୋଇ ଗଲାଣି । ରଜାପୁଅ ତାକୁ ଭାରି ଆଦରରେ ତାଙ୍କ ପାଖରେ ବସାଇଲା । ଦିହେଁ କେତେ କଣ କଥାବାର୍ତ୍ତା ହେଲେ । ଆରଦିନ ରଜାପୁଅ ସାଧବ ଝିଅକୁ ବାହା ହେଲା । ଦିହେଁ ମହାସୁଖରେ ଆନନ୍ଦମସ୍ତ ହୋଇ ରହିଲେ ।

ଏମିତି କେତେଦିନ ଗଲାରୁ ସାଧବଝିଅ ଶୁଣି ପାରିଲା ଯେ, ତା ବଡ଼ ଭଉଣୀର ବାହାଘର ହେଉଛି । ସିଏ ସେଠୁ ଦେଖିବାକୁ ଆସିବ ବୋଲି କହିଲାରୁ ସିଂହ ହଁ କଲା । ସିଏ ଆସି ବାପଘରେ ପହଞ୍ଚନ୍ତେ ତାକୁ ଦେଖି ସମସ୍ତେ ଆଚମ୍ବିତ ହୋଇଗଲେ । କାହିଁକି ନା ସମସ୍ତେ ଭାବୁଥିଲେ ଯେ, ତାକୁ ସିଂହ ମାରି ପକେଇଥିବ । ବାହାଘର ଉତ୍ତାରୁ ସିଏ ପୁଣି କନସ୍ତକୁ ଫେରିଯାଇ ରଜାପୁଅ ସାଙ୍ଗେ ମହାସୁଖରେ ରହିଲା । ଆଉ କେତେ ଦିନକୁ ତା ଆର ଭଉଣୀର ବାହାଘର ହେଲା । ଏଥରକ ସାଧବଝିଅ ଜାଣିଗଲା ଯେ, ସିଂହ ନ ଗଲେ ସିଏ ଆଉ ଏକା ହେଇ ଯିବ ନାହିଁ । ସିଂହ ବେଢର ନାହିଁ କରୁଥାଏ । ପଛକୁ ସାଧବ ଝିଅ ଏକାମର ଜିଦ୍ ଧରି ବସିଲାରୁ ଆଉ କଣ କରିବ, ମାନିଲା । ଗଲାବେଳେ ସିଂହ କହିଲା, "ଦେଖ, ମୁଁ ଯାଉଛି ସିନା, ମୋର ଦେହରେ ଯେବେ ମଶାଲ ଆଲୁଅ ବାଜିଯିବ, ମୁଁ ଝାପଡ଼ାଟିଏ ହୋଇ ହାତଚରଣ କାଳ ଉଡ଼ି ବୁଲିବି ଏକା !" ସାଧବ ଘରେ ଆସି ପହଞ୍ଚିବାରୁ ଲୋକଙ୍କ ସେଇଁ ଗୋଟେ ଘର ଉଠିଲା ହେଲା ଯେ, ତାର କାନ୍ଥ ଗୁଡ଼ାକ ପାଖହାତ ବଦଳ, ଆଉ କବାଟ କଂ । ପଟାରେ ଉଠାଇ । ତାଇ ସେ ଛାତରେ ରହିଲେ । ହେଲେ

କଣ ହେବ, ହଠାତ୍ ଝଡ଼ରେ କୁଆଡ଼ୁ ଗୋଟେ ଯୋରସଟେ ଗଲାସିନା ଭଲ କଣା ଥିଲା ଯେ, ସେଇ ବାଟେ ମଶାଲ ଅଲୁଅ ଅଣି ଚଳାଇଥିଲା ଧନ୍ଦରେ ପଡ଼ିଗଲା । ସେଇକ୍ଷଣି ସିଏ ଗୋଟିଏ ଧଳା କାପଡ଼ାଟିଏ ହୋଇ ଘରଯାକ ଉଡ଼ି ବୁଲିଲା । ଆଉ ସାଧବ ଝିଅ ଆସି ଦୁଆର ଫିଟେଇଲା-କ୍ଷଣି ସିଏ କୋଉଆଡ଼େ ଉଡ଼ି ଚାଲିଗଲା ।

ଏହା ଦେଖି ସାଧବଝିଅର ହାଲୁକା ଶୁଖିଲା । ସିଏ ପଛେ ପଛେ ଧାଇଁଲା । କାପଡ଼ା ଯେଆଡ଼େ ଯାଉଥେ, ଇଏ ସେଇ ଅଡ଼େ ଚାଲୁଥେ । ଏଇମିତି ସାତବରଷ ବିତି ଗଲାରୁ ତା ଦୁଃଖ ମେଣ୍ଟିବ ବୋଲି ବିଚାରି ଦେଲେ ସେ ମନେ ମନେ ଭାରି ଆନନ୍ଦ ହେଲା । ସେତିକି ବେଳକୁ କାପଡ଼ା କୋଉଆଡ଼େ ଉଡ଼େଇ ଗଲା ଯେ ସିଏ ଆଉ ତାକୁ ଦେଖିଲା ନାହିଁ । ସେଠୁ ଯାଇଁ ସୂର୍ଯ୍ୟଙ୍କ ପାଖରେ ପହଞ୍ଚିଲା । ପଚାରିଲା, "ତମେ ତ କେତେ ମୁଲକ ବୁଲୁଛ, ଗୋଟିଏ ଧଳା କାପଡ଼ା କୋଉଠି ଦେଖିଛ କି ?" ସୂର୍ଯ୍ୟ ନାହିଁ କଲେ । ହେଲେ ତାକୁ ଗୋଟିଏ ପେଡ଼ି ଦେଇ କହିଲେ; "ଏଇ ପେଡ଼ିଟି ନେ ଯେ, ଯାକୁ ଫିଟେଇଲେ ଇଥିରୁ ଯାହା ବାହାରିବ ତୋର ଭାରି କାମରେ ଆସିବ ।" ସାଧବଝିଅ ସେଠୁ ପେଡ଼ିଟିକୁ ଧରି କରି ଗଲା । ଯାଉ ଯାଉ ବେଳ ବୁଡ଼ିଲା । ଚନ୍ଦ୍ର ଉଇଁଲାରୁ ତାଙ୍କ ପାଖକୁ ଯାଇ ପଚାରିଲା, "ଜଣ ପଦା ସବୁଠି ତ ତମ ଅଲୁଅ ଯାଇ ପଡ଼ୁଛି, ତମେ କଣ କୋଉଠି ଧଳା କାପଡ଼ାଟିଏ ଥିବାର ଦେଖିଛ ?" ଚନ୍ଦ୍ର ନାହିଁ କଲେ । ହେଲେ ତାକୁ ଗୋଟିଏ ଫରୁଆ ଦେଇ କହିଲେ, "ତୁ ଯାକୁ ନେ ଯେ, ଦରକାର ହେଲାବେଳେ ଫିଟେଇବୁ ।" ଇଏ ସେଠୁ ଫରୁଆ ଧରି ଯାଇ ପବନ ପାଖେ ପହଞ୍ଚିଲା । ପଚାରିଲା, "ପବନ ଦେବତା, ତମେ ତ ସବୁ ଆଡ଼େ ବୋହୁଛ, ଗୋଟିଏ

ଧଳା କାପଡ଼ା କୋ'ଟି ଦେଖିଚ କି ?" ପବନ କହିଲା, "ହଁ ଲୋ ମା', ରକତ ସମୁଦ୍ର ପାଖରେ ଯେ କାପଡ଼ାଟି ଗୋଟିଏ ସିଂହ ହୋଇକରି ଏବେ ଗୋଟିଏ ଭାରି ବଡ଼ ଅଜଗର ସାପ ହାବୁଡ଼ରେ ପଡ଼ିଚି ଯେ, ସେ ଏ ସାପ ତାକୁ ଗିଳି ପକାଉଚି । ତୁ ଯିବୁ ଯେ ସେଠେଇ ଅସୁମାରି ତାଳ ଗଛ ପଡ଼ିଚି ଦେଖିବୁ । ଯୋଉ ତାଳଗଛ ଠେଇଁ ଏଣୁ ଗଣି ଗଲେ ସାତ, ସେଣୁ ଗଣି ଗଲେ ସାତ ହେବ ତାକୁ ଓପାଡ଼ି ସେ ସାପକୁ ପାହାରେ ପିଟିଲେ ସିଏ ଗୋଟିଏ ଦିବ୍ୟ ସୁନ୍ଦର ମାଇପିଟିଏ ହୋଇଯିବ; ଆଉ ସେ ସିଂହଟି ପୁଣି ରଜାପୁଅ ରୂପ ଧରିବ ।"

ଏହା ଶୁଣି ସାଧବଝିଅ ରକତ ସମୁଦ୍ରକୁ ଯାଇଁ ଦେଖେ ତ, ସତକୁ ସତ ସିଂହ ଏକ ଅଜଗର ସାପ ହାବୁଡ଼ରେ ପଡ଼ିଚି । ସେଠୁ ସିଏ ତାଳଗଛଯାକ ଏଣୁ ଗଣି ଗଲା, ସେଣୁ ଗଣି ଗଲା । ଯୋ'ଠି ସାତ ହେଲା, ସେ ତାଳଗଛକୁ ଓପାଡ଼ି ସାପକୁ ପାହାରେ ପିଟିବାରୁ ସିଏ ଗୋଟିଏ ଦିବ୍ୟ ସୁନ୍ଦର ସ୍ତିରୀ ରୂପ ଧରି ଠିଆ ହେଲା । ଆଉ ସିଂହଟି ପୁଣି ରଜାପୁଅ ପାଲଟି ଗଲା । ହେଲେ ସାଧବ ଝିଅ ବୁଝୁଁ ବୁଝୁଁ ସେ ସ୍ତିରୀଟା ରଜାପୁଅକୁ ସାଙ୍ଗରେ ଘିନି ପଳେଇଲା । ସାଧବଝିଅ ଫେରେ ଅଣ୍ଟା ଭିଡ଼ିଲା, କହିଲା, "ଯୋଉ ପର୍ଯ୍ୟନ୍ତ ପବନ ବୋହୁଚି, ଅଉ କୁଅ ବୋବାଉଚି, ମୁଁ ରଜାପୁଅକୁ ଗୋଡ଼େଇ ଗୋଡ଼େଇ ଯିବି ।" ଏହା କହି ପଛେ ପଛେ ଗୋଡ଼େଇଲା । ସେ ସ୍ତିରୀଟି ତ ଗୋଟିଏ ରଜାର ଝିଅ, ଯାଇଁ ଯାଇଁ ତା ଉଆସ ପାଖରେ ହାଜର ହେଲା । ଇଏ ଲୋକବଳକୁ କଣ ହେଇଚି ନା, ରଜାପୁଅ ତାକୁ ବରି ହବ ବୋଲି ବାଇଦ ବାଜଣା ବାଜୁଚି, ହୁଳହୁଳି ପଡ଼ୁଚି । ଏହାକୁ କାନ୍ଥ ବୁଢ଼ି ଦଶିଲ ନେଇଁ । ହେଲେ ମନେ ପଡ଼ିଗଲା, ସୂର୍ଯ୍ୟ ଲଣ ସେଡ଼ି ଦେଇଥିଲେ ପରା ! ସେଡ଼ି

ପିନ୍ଧେଇ ଦେଖିଲାବେଳକୁ କେଡ଼େ ସୁନ୍ଦର ଶାଢ଼ୀଟିଏ, ସୂର୍ଯ୍ୟଙ୍କ ପରି ତାହା ଦିଶୁଛି । ତାକୁ ଚିହ୍ନି ନଥିଲେ ଲୋ । ସିଏ ଦେଖିଲା ଆଶ୍ଚର୍ଯ୍ୟ ହୋଇଗଲା । ରଜାଝିଅ ଦେଖି କଣିମାକୁ ଲଗେଇଲା । ମାତ୍ର ମାଧବ-ଝିଅ କହିଲା, "ନାଁ, ମୁଁ ଟଙ୍କା ସୁନା ନେବିନେଇଁ, ଖାଲି ଏ ରଜାପୁଅ ସାଙ୍ଗେ ରାତିରେ ପଦେ କଥା ହେବି । ତା ବଦଳରୁ ତମକୁ ଶାଢ଼ୀ ଖଣ୍ଡେ ଦେଇ ପକେଇବି ।" ରଜାଝିଅ ହଁ କଲା । ମାତ୍ର ଏଣେ କଣ କଲା ନା, ରଜାପୁଅକୁ ନିଶା ଖୋଇଦେଇ ଶୁଆଇ ପକେଇଲା । ମାଧବଝିଅ ରାତିସାରା ପାଖରେ ବସି କେତେ କାନ୍ଦିଲା, ବିଫଳ ହେଲା । ରଜାପୁଅର ନିଘୋଡ଼ ନିଦ, ତାକୁ କିଛି ଶୁଣିଲା ନେଇଁ ।

ସୁନୁଲୀ ଶାଢ଼ୀଖଣ୍ଡ ଦେଇ ମାଧବ ଝିଅ ସକାଳ ହେଲାରୁ ଉଆସରୁ ପଳେଇଲା । ଚନ୍ଦ୍ର ଦେଇଥିବା ଫରୁଅଟି ତା ପାଖରେ ଥାଏ । ତାକୁ ଫିଟେଇଲାରୁ ସେଥିରୁ ଗୋଟିଏ ରୂପାର ମୁକୁଟ ବାହାରିଲା ଯେ, ସେ ମୁକୁଟ ଦେଖିବାକୁ ଠିକ୍ ଚନ୍ଦ୍ରଙ୍କପରି ଦାଉ ଦାଉ ଦିଶୁଥାଏ । ତାକୁ ମୁଣ୍ଡରେ ଭିଡ଼ିକରି ଉଆସକୁ ଗଲାରୁ ରଜାଝିଅର ସେଥିରେ ଭାରି ଲୋଭ ଲାଗିଲା । ସିଏ କଣିମ ବୋଲି ଲଗେଇଲା । ମାଧବଝିଅ କହିଲା, "ମତେ ରଜା-ପୁଅ ସାଙ୍ଗେ ରାତିରେ ପଦେ କଥା ହବାକୁ ଛାଡ଼ିଦେଲେ ମୁଁ ଦେଇ ପକେଇବି, ଟଙ୍କା ସୁନା କିଛି ନେବି ନେଇଁ ।" ତା ଅରଦାନ ରାତିସାରା ତାକୁ ଠକିଦେବ ବୋଲି ଭାବିକି ରଜାଝିଅ ମାନିଲା ।

ହେଲେ ରଜାପୁଅ ସକାଳୁ ଉଠି ସେ ଭଲାକି ପଚାରୁଥାଏ, "କାଲି ରାତିରେ କିଏ ଗୋଟେ ମୋ କାନ ପାଖେ ଗୁଣୁ ଗୁଣୁ ହୋଇ-ଥିଲା କି ?" ସେଠୁ ଯୋଇଲି ତାକୁ ସବୁ କଥା ଘରୁ କହୁଥାଏ । ରଜା-

ପୁଅ ଯେମିତ ଶୁଣିଲା ଯେ, ସେ ମାଇପିଟି ତୁଣି ତା ପାଟକୁ ତଳରେ ଅଧିକ, ସିଏ ଝାଳାଝିଅ ଦେଇଥିବା କଣା ଗୁଡ଼ାକ ପକାଇଦେଲା । ଜାତିଭଅର ହୋଇ ଥାଏ, କେତେବେଳେ ସେଇ ମାଇପିଟି ଅସିବ । ଦାହିଁ ଝିଅ ଅଇଲାରୁ ସହେଁ ଯାକ ହୋଟହୀ ହେଲେ, ବଡ ବଡ ସେଠୁ ଉଠି କୁଟକର ଡେଲେଇଲେ । ଯାଇ ଅଟଣା ତେଜରେ ପହଞ୍ଚିଲେ । ରଜାପୁଅ ରଜା ହୋଇ ରାଇଜ ବୁଝିଲା । ରଜା ରାଣୀ ଦୁହେଁ ସୁଖର ଅନନ୍ଦରେ ରହିଲେ । ମୁଁ ଗଲାକୁ କଥା ନ କହୁଲେ ।





## ଯାହାପାଇଁ ଯିଏ ଜନମ

**ଏକ** ରାଇଜରେ ଏକ ରାଣୀ ଥାଆନ୍ତି ଯେ, ସେ ବିଧବା । ତାଙ୍କର ମାଳତୀଝର ବୋଲି ଦିବ୍ୟ ସୁନ୍ଦର ଝିଅଟିଏ । ଝିଅକୁ ଦଶ ବରଷ ପୂରିଲାରୁ ବାଭାଘରପାଇଁ କେତେ ଆଡୁ କେତେ ପ୍ରସ୍ତାବ ଆସି ପଡ଼ିଲା । ଶେଷକୁ ମାଳତୀଝର ଅଶ୍ୱେଲ ରାଇଜ ରଜାପୁଅର ହାତ ଧରିଲା ।

ବାହାଘର ସରିଲାରୁ ରଜାପୁଅ ଗଲା ତା ରାଇଜକୁ, ଜେମା ରହିଲା ବାପଘରେ । କେତେଦିନ ଉତ୍ତାରୁ ଜେମା ବଡ଼ ହେଲା । ମହାରାଣୀଙ୍କର ତ ସେ ଗଣ୍ଠି ଫିଟିଲା, ଦଶସ୍ତ୍ର ନ ଦେଖିଲେ ତାଙ୍କୁ ଅନ୍ନପାଣି ରୁଚେ ନାହିଁ, ଝିଅକୁ ଶଶୁରଘରକୁ ଛାଡ଼ିବାକୁ ତାଙ୍କ ମନ ହୋଉଚି କେମିତିକେ? ଇମିତି ଇମିତି ହେଇ କେତେଦିନ ଗଲା ।

ସମୁଦ୍ରଘରୁ ଡାକରା ଉପରେ ଡାକରା ଆସିଲା । ଝିଅ ତ ନିଶ୍ଚେ ଯିବ, ରାଣୀ ପେଡ଼ିରୁ କେତେ ଅପୂରୁବ ଜିନିଷ, କେତେ ହୀରା ନୀଳା ମୋତି ମାଣିକ, କେତେ ପାଟପଶନ, ଯାହା ଯିମିତି ପାରିଲେ ସବୁ ଝିଅପାଇଁ ସଜାଡ଼ି ରଖିଲେ । ଜୋଇଷ ଆସି ଅନୁକୂଳ ଲଗ୍ନ ଦିନ ଛଅ ବେଳା ଗଣି ଦେଇଗଲା । ଜେମା ଯିବ ଜନମଘର ବାଟ ଶାଶୁ ଘରକୁ । ସବୁ ସଜବାଜ ହେଲା । ରାଣୀ ଝିଅ ସାଙ୍ଗରେ କଳାବତୀ ବୋଲି ଗୋଟିଏ ଦାସୀକି ପଠେଇଲେ । ବୁଢ଼ିଙ୍କ ପାଇଁ ଯୋଡ଼ିଏ ଘୋଡ଼ା ଦେଲେ । ଜେମା ଘୋଡ଼ାଟିର ନାଁ 'ମନମିରିଗ ।' ସିଏ କଣ କରେ ନା, ମଣିଷ ପରି ସଫା କଥା କହେ ।

ଝିଅ ଜନମକୁ ଲାଗି ଶାଶୁଘରକୁ ଯିବ, ପକ୍ଷକ ଆଗରୁ ରାଣୀଙ୍କ ଆଖିରୁ ଲୁହ ଶୁଖିବାକୁ ନାହିଁ । ଭାରିଲା ଦିନ ରାଣୀ କଣ କଲେ କି ଶୋଇବା ଘରକୁ ଯାଇ ଆପଣା ମୁଣ୍ଡରୁ କେରିଏ ବାଳ କାଟିଲେ, ସରୁଆ-ଣ୍ଠିରେ ପୂରାଇ ଝିଅହାତରେ ଦେଲେ । କହିଲେ, "ମାଆ ମୋର, ଇଟିକି ବଡ଼ ଯତନରେ ରଖିଥିବୁ । ବାଟରେ ବିପଦ ପଡ଼ିଲେ ତତେ ଇଏ ସାହା ହେବ ।" ମାଆ ଝିଅ କେତେ କାନ୍ଦିଲେ । ଝିଅ ଘୋଡ଼ାରେ ଚଢ଼ି ଦାସୀ ଆଉ ଚାକରବାକରଙ୍କ ସାଙ୍ଗେ ବାଙ୍କ ବୁଲିଲାଯାଏଁ ମାଆ ସମିତି ଚାହିଁଥାନ୍ତି । ଝିଅ ଲେଉଟି ଲେଉଟି ଚାହିଁ ଚାହିଁ ଆଖି ଆଗରୁ ଲୁଚିଗଲା ।

ସେମାନେ ନଅର ଛାଡ଼ି କେତେଦିନର ବାଟ ଗଲେ । ଯାଉ ଯାଉ ଏକ ବନସ୍ତ ପଡ଼ିଲା ଯେ, ଆଖପାଖରେ ଗାଁ ଗଣ୍ଡା କିଛି ନାହିଁ । ଜେମାକୁ ଭାରି ଶୋଷ କଲା । ସେ ଦାସୀକି ଡାକି କହିଲା, "କଳାବତି, ଯାଆ ତ ଅଜୁଖୁଡ଼ିରୁ ଢାଳ ନେଇ ମୋ ପାଇଁ ଝରଣାରୁ ପାଣିମୁନ୍ଦାଏ

ଅଣିମୁ ।" ଦାସୀ ଯ୍ୟା ଶୁଣି ମୁହଁ ଫିଣିଫିଣି କରି କହିଲା, "ଯାଅ ମ, ତମ ସେଇଁ ଇଲେ ପାଣ ଅଣିଦେବ ନା ? ମନ ହଉଚ ଯମନ୍ତ, ଝରରେ ମୁହଁ ଲଗେଇ ମନ୍ଦେ ତ ପିଇଦେଇ ଅସିବ, ମୁଁ ତମର ଏତେ ବୋଲକାର ଦାସୀ ହେଇଂପାରବ ନାଇଁ ।"

ସେଇ ଯୁ କଳାବତୀ ବୋଲି ଦାସୀଟି, ସେ ଗୋଟିଏ ଅସୁରୁଣୀର ନାତୁଣୀ । ସେ କେତେ ମନ୍ତ୍ର ଜାଣେ । ମନ୍ତ୍ର କରଦେଇ ସେ ଲୋକଙ୍କୁ ମାରପକାଏ । ମାଲଗାଝର ବା ତା ମାଅ ଏ କଥା କିଛୁ ଜାଣନ୍ତି ନାଇଁ । ମାଲଗାଝର ସାଙ୍ଗରେ ଯୁ ଗୁକର ବାକାର ଅସିଥିଲେ, ସବୁଙ୍କେ ଗୋଟିଏ ଗୋଟିଏ କରି ବାଟରେ ସିଏ ସମସ୍ତିଙ୍କି ଖାଇଦେଇଚ, ଅଉ ମାଲଗାଝରକୁ ବୁଝେଇଚ ଯେ, ସେମାନେ ଆଗେ ଅଗେ ଗଲେଣି, ରଜାଘରେ ଖବର ଦେବେ ।

ଜେମାର ତୋଟି ଶୁଖି ଯାଉଥିଲା । ମାଅ ଅଚ୍ଛୁ ସେ ଝଲ କରି ନ ହେବ ନା ଅପମାନ କରି ରହବ ? ଘୋଡାରୁ ଓହ୍ଲେଇ ଝର ପାଖକୁ ଗଲା; ଯାଇ ଚଳା ଚଳ କରି ମନ୍ଦେ ପାଣି ପିଇଲା । ଦାସୀ କଥାରେ ଦୁଃଖ ଅପମାନରେ ତା ବୁକୁ ଫାଟି ଯାଉଥେ । ପଣତ କାନରେ ଲୁହ ପୋଚ୍ଛ ପୋଚ୍ଛ କହୁଥିଲା, "ପୋଡ଼ା କପାଳରେ ପୁଣି ଯ୍ୟା ଥିଲା ?" ମାଅ ଯୋଉ ବାଲକେରକ ଦେଇଥିଲେ, ଜେମା ତାଙ୍କୁ କାନରେ ବାନ୍ଧିଥିଲା । ଜେମାର ମନକଥା ଜାଣି ସେଇ ବାଲକେରକ କହିଲା:—

"ମାଲଗାଝର ଗୋ ମାଲଗାଝର !
ମାଅ ଯେବେ ଜାଣୁଥାନ୍ତେ ଯ୍ୟାକୁ
ଦୁଃଖେ ଫାଟି ଯାଉଥାନ୍ତା ବୁକୁ ।"

ଜେମା ତ ସିମିତ ଦୁଷ୍ଟପିଲା ନୁହେ, ଦାସୀକଥାକୁ ସିଏ ସିନା ଅବମାନ କଲା, ଆଉ କିଛି କହିଲା ନାହିଁ । ସେହେଁ ସେଠରେ ଘୋଡ଼ାରେ ଚଢ଼ି ଗଲେ ।

ଯାଉ ଯାଉ ଆଉ ଏକ ଅପନ୍ତରା ଗହ୍ୱର ପଡ଼ିଲା ଯେ, ସେ ଲମ୍ବରେ ଦଶକୋଶ, ଓସାରରେ ଦଶକୋଶ । ଉଦୁଉଦିଆ ଦୀପହର ହୋଇଗଲା । ସେଇ ଗହ୍ୱର ଦେଷମୁଣ୍ଡକୁ ଏକ ନଈ । ଜେମା ନଈ ତଡ଼ରେ ଗୋଟିଏ ଗଛ ମୂଳରେ ବସିଲା । ଦାସୀକି କହିଲା, "ଯାଆ କ, ପାଣିଟିକେ ଆଣି-ଦବୁ ।" ଦାସୀର ସେଇଦିନ କଥା ଜେମାର ଆଉ ମନେ ନାହିଁ । ଦାସୀ ତା ଶୁଣି ଆଉର ହାଣି ହାଣି କଥା କହିଲା, "ତମ ମନ ହେଲେ ତମେ ପିଅ, ନ ପିଅ, ମୁଁ କାହିଁ ଦାସୀ ହୋଇକରି ଧାଉଁଥିବ ?"

ଜେମାକୁ ତ ଖରାରେ ଦହକ ବ[illegible] ଲାଗୁଥିଲା, ଇ କଥା ଶୁଣି କ୍ରୋଧ ଉଠିଲା । ହେଲେ କହିବ କାହାକୁ ? ଗୋଟିଏ ଗୋଟିଏ ନଈ ଭିତରକୁ ଗଲା । ନଈରେ ଗୋଟା ଛଅ ବେକଯାଏଁ ବୁଡ଼ି ଦେଇ ପାଣି ପିଉଥେ, କହୁଥେ, "ହାଅରେ ଦଇବ, କାହା ଝିଅ କାହା ଭାରିଯା ହେଇ ପୁଣି କପାଳରେ ଯା ଲେଖାଥିଲା ?" କାନରେ ଏଣେ ବନ୍ଧା ହୋଇଥିବା ତାଳକେରକ କହିଲା:—

"ମାଳତୀଝର ଗୋ ମାଳତୀଝର !
ମାଅ ଯେବେ ଜାଣୁଥାଅନ୍ତେ ଯାକୁ
ଦୁଃଖେ ଫାଟି ଯାଉ ଥାଅନ୍ତା ବୁକୁ ।"

ଇ ସମୟରେ କଣ ହେଲା ନା, ଜେମା ପାଣି ପିଉ ପିଉ ତା ତାଳ କେରକ କାନରୁ ଫିଟି ନଈରେ ଖସିଗଲା । ଜେମା କୂଳକୁ ଆସି

ଦେଖିଲା ହେଲେକୁ କାନରେ ଅଜ ଶୁଭିଲା ନାହିଁ । ତା ଦେହରୁ ରକତ ଶୁଖିଗଲା । ଏ କଥା ଦାସୀ ଦେଖିଲେ । ତା ବୁକୁ ଆନନ୍ଦରେ କୁଣ୍ଡେ ମୋଟ ହେଲାଣି । କାହିଁକି ନା, ସିଏ ଜାଣିଛି ଯେ, ସେଇ ବାଳ କେମାକୁ ସବୁ କଥା କହି ଦେଉଛି । ଏଣିକି କେମକୁ ହଇରାଣ କରିବାକୁ ତାକୁ ସଜ ହେଲା । ରାଧୁଆ ପାଧୁଆ ସାରି ଦିହେଁ ଯେତେବେଳେ ଘୋଡ଼ା ପାଖକୁ ଗଲେ, ଦାସୀ କଣ କଲା ନା କେମାର ମନମିରଗ ଘୋଡ଼ାକୁ ଧଇଲା ସିଏ ବସିବ ବୋଲି । କେମାକୁ ତା ଘୋଡ଼ାଟିକୁ ଦେଲା । କେମା ତ ଏକୁଟିଆ, ତାର ଆଉ କିଛି କହିବାକୁ ହୁଏ ପାରିଲା ନାହିଁ । ଦାସୀ କେମାଠୁ ସବୁ ପାଟପଟନ ଅଲଙ୍କାରଗୁଡ଼ା ଛଡ଼ାଇ ପିନ୍ଧିଲା, ରଜାଝିଅ ପର ମନମିରଗ ଘୋଡ଼ାରେ ବସି ଚାଲିଲା । କେମା ଦାସୀର ପାଲଟା ଲୁଗା ଖଣ୍ଡେ ପିନ୍ଧି ଆଉ ଘୋଡ଼ା-ଟିରେ ବସି ଲହ ପୋଛି ପୋଛି ପଛେ ପଛେ ଗଲା । ଦାସୀ ବାଟରେ କେମକୁ ଡରେଇ ଥାଏ, "ତୁ ଯେବେ ଏ କଥା ସବୁ ଆଉ କାହାକୁ କହି ଦବୁ ତେବେ ତତେ ପାଡ଼ିଗୋଡ଼ କରି ହାଣି ତଳ ଖଣ୍ଡା ଉପର ଖଣ୍ଡା କରି ପୋତି ଦେବି ।" ହେଲେ, ସିଏ କେମାକୁ ଅନ୍ୟାୟ-କାରଣରେ ଯେ ଏତେ ଏତେ ଦଣ୍ଡ ଦେଉଛି, ଏକଥା ମନମିରଗ ସବୁ ଦେଖୁଥାଏ ।

ଇମିତି ଯାଇ ଯାଇ କେତେଦିନ ଉତ୍ତାରୁ ଦିହେଁ ରଜାଙ୍କ ନଅର ପାଖେ ଯାଇ ପହଞ୍ଚିଲେ । ରଜାପୁଅ ତ ସାତବର୍ଷ ତଳେ ମାଳତୀ-ଝିଅଙ୍କୁ ବଭା ହେଲାବେଳେ ଦେଖିଥିଲା, ଏବେ ଆଉ ସେ ତାକୁ ଚିହ୍ନି-ପାରିଲା ନାହିଁ । ସେ ଉଆସରୁ ଆସି ରାଣୀ ବୋଲି ଭୁଲ ଦାସୀ ହାତ ଧରି ଭିତରକୁ ନେଇ ଗଲା ।

ଏଇ ସମୟକୁ ବୁଢ଼ା ରଜା ନଅର ଉପରେ ପା'ଚାରି କରି ବୁଲୁଥିଲେ । ଦେଖିଲେ, ଅତି ସୁନ୍ଦର ସ୍ତ୍ରୀଟିଏ ଦୁଆରମୁହଁରେ ଠିଆ ହୋଇଛି । ନୂଆ ରାଣୀଙ୍କ ପଚରା ହେଲାରୁ ସିଏ କହିଲା, "ସିଏ ଦାସୀ ହୋଇ ମୋ ସାଙ୍ଗରେ ଆସିଛି । ଇମିତି ସ୍ୱର୍ଗ ଅପସରୀ ପୁଣି ଦାସୀ ହୋଇ ଖଟିବ ?"—ବିଚାରି ବୁଢ଼ା ରଜାଙ୍କ ମନ ଖାଲି ବଥେଇ ହେଲା । ତାଙ୍କର ଗୁଡ଼ାଏ ପୋଷା ହଂସ ଥାଆନ୍ତି ଯେ ମଦନା ବୋଲି ଗୋଟିଏ ପିଲା ତାଙ୍କୁ ଜଗାରଖା କରୁଥେ । ରଜା କହିଲେ, "ନାଇଁ ନାଇଁ, ଏ ଦାସୀ ପାଇଟିପଟ କିଛି କରିବ ନାଇଁ । ସିଏ ଦହକୁ ବାଧିବ । ମଦନା ସାଙ୍ଗେ ଇଏ ସବୁଦିନ ହଂସଗୁଡ଼ାକୁ ଚରେଇ ନବ, ଆଣିବ, ଏଇତା କରିବ ।"

ସେଇଦିନୁ ମାଳଭାଙ୍ଗରି ମଦନା ସାଙ୍ଗେ ସକାଳୁ ମୁଠିଏ ଖାଇ ଦେଇ ଯାଏ ଯେ ଉରମାଳୁଣ୍ଡ ବେଳକୁ ନଅରକୁ ଆସେ । ଦିପହରେ ଭୋକ କଲେ କାନିରେ ଜାଣ ପୁଞ୍ଜିଏ ବାନ୍ଧି ନେଇ ଥାଆନ୍ତି ଯେ, ସେ ଦିହେଁ ସାଙ୍ଗ ହୋଇ ଖାଆନ୍ତି । ମଦନା ଯୁ' ଘଟରେ ଥାଏ, ମାଳଭାଙ୍ଗରି ତା ପାଖ ଘଟରେ ରହେ ।

କେତେ ଦିନ ଗଲାରୁ ସେଇ ଯୋଉ ଦାସୀ ରାଣୀ ହୋଇଥିଲା ରଜାପୁଅକୁ କହିଲା, "ମୁଁ ଗୋଟିଏ କଥା କହିବି । କରିବ ବୋଲିଲେ ହଁ କର ।" ରଜାପୁଅ ହଁ କଲାରୁ ସେ କହିଲା, ଆମ ଘୋଡ଼ାଶାଳରେ ମନମିଶିଗ ବୋଲି ଯୁ' ଘୋଡ଼ାଟା ଅଛି ତାକୁ ହଣେଇ ଦିଅ । ବାହାରେ ଆଇଲାବେଳେ ମତେ ସିଏ ଯେଉଁଭଳି ହଟହଟା କରୁଛି ସେ କଥା ଶୁଣାଇ ଦେଲେ ମୋ ଦିହ ଥରୁଛି । ତାକୁ ନ ହଣାଇଲେ ମୁଁ ଆଜି ଅନ୍ନ ପାଣି ଛୁଇଁବି ନାଇଁ ।"

ମାଙ୍କ ଅସଲ ଉତ୍ତର କଥା ହେଉଛି, ରାଣୀ ମନରେ ଦକା ଚଟିଲା, ମନମିରଗ ତ କଥା କହେ, ସିଏ କାଳେ ମାଳତୀଝଙ୍ଗ କଥା କହି ପକାଇବ । ତାହାହେଲେ ତା ଦୁଃଖ କାହାଣୀ ଗାଇବ ନାହିଁ । ରଜା ପୁଅ ତ ଏତେ କଥା ଜାଣେ ନାହିଁ, ସିଏ ହୁକୁମ ଦେଲା, ମନମିରଗ ଅନ୍ୟାୟକାରଣରେ ପ୍ରାଣ ଖୋଇଲା ।

ଏ କଥା ଶୁଣି ମାଳତୀଝଙ୍ଗ କେତେ କାନ୍ଦିଲା ବୋବେଇଲା, ହେଲେ ତା ଦୁଃଖ ବୁଝିବ କିଏ ? ସେ ଅପେ ଗଲା, ଯାଇ କରି ଧାଙ୍ଗାକୁ କହିଲା, "ଭାଇ, ଘୋଡ଼ାଟା କି ତ ହାଣିଲୁ, ମୁଁ ତତେ ଦାନ୍ତରୁ ଜୁଠା ହେଉଚି, ତାର ସେଇ ମଲା ମୁଣ୍ଡଟି ନେଇ ରଜାଘର ନଅର ଗାଡ଼ ଦୁଆରେ ଲଟକେଇ ଦେଇ ଥା ଯେ, ମୁଁ ହେଲେ ତାକୁ ଗଲାଆସିଲା ବେଳେ ଦେଖୁଥିବି ।" ଧାଙ୍ଗା ହଁ କଲା, ସେଇମିତି ନେଇ ଗାଡ଼ଦୁଆର ପାଖେ କାନ୍ଥରେ କଣ୍ଟାଟେ ମାରି ମୁଣ୍ଡଟିକୁ ଓହଳେଇ ଦେଲା ।

ସବୁ ଦିନ କାଲିଅନ୍ଧାରରୁ ଉଠେ ମାଳତୀଝଙ୍ଗ ମଦନା ସାଙ୍ଗେ ଗାଡ଼ ଦୁଆର ବାଟେ ହଂସ ଚରେଇବାକୁ ନିଏ । ନେଲାବେଳକୁ ସେଇ ମୁଣ୍ଡକୁ ଦେଖି କାନ୍ଦି କରି କହେ:—

"ମନମିରଗ ରେ ମନମିରଗ,
କପାଳେ ଥିଲା କି ଇ ଦୁର୍ଯୋଗ ?"

ତା କଥ ଶୁଣି ସେଇ ମଲା ମୁଣ୍ଡଟା କଥା କହେ:—

"ମାଳତୀଝଙ୍ଗ ଗୋ ମାଳତୀଝଙ୍ଗ,
ରଜାଜେମା ହେଇ ଇ ଦୁଃଖ ଥିଲା ।"

ମାଅ କେବେ ଜାଣୁ ଥାଅନ୍ତେ ସ୍ବାକୁ
ଭୁକେ ଫାଟି ଯାଉ ଥାଅନ୍ତା ବୁକୁ ।"

ମାଳତୀ ଆଉ ମଦନା ନଅର ପାଖ ହେଇ ପଡ଼ିଆରେ ହଂସ ଛାଡ଼ି ଦିଅନ୍ତି । ଆଉ ତ କିଛି ପାଇନି ନ ଥାଏ, ମାଳତୀ ନାଳି ତଳରେ ବସି ଚାଳ ଫିଟେଇ ମୁଣ୍ଡ କୁଣ୍ଡାଏ । ରଜାଘର ଝିଅ, ଆଜ ସିନା ଏବେ ହୀନମାନ ହେଲେ, କଳା ଭଅଁରଅଁର ବାଳ ଦେଖିଲାକ ଫୁଲୁକା କରିଦେଲେ ଗୋଡ଼ ତଳକୁ ଯାଇ ପଡ଼େ । ଧନେ ମଦନା କଣ କଲା ନା, ତାକୁ ଗଡ଼ଲିଲା ଘର ହଟୁଣ୍ଡ ଯାଇ ସେଇ ବାଳରୁ ଦ'କୋଟା ଛିଣ୍ଡେଇ ଦେଲା । ମାଳତୀକୁ କାହିଲା । ସିଏ ପାଟିକରି କହିଲା:—

" ଆ ଆଟରେ ବଡାପି ଆ ଆ
ମଦନା ତଲାର ନେଇ ଯାଅ ।
ନେଇଁ ଯାଅ ବଣ ପରବତ
ଇ ମଦନା ହେଉ ହରଜତ ।
ମଦନା ଧାଇଁ ମ ଯେତେବେଳେ
ଖୋଷା ବାନ୍ଧି ଦେବ ସେତେବେଳେ ।"

ଏହା ଗାଇଲାରୁ କୁଆଡ଼ୁ ଗୋଟେ ହୁଣ୍ଡୁମୁଣ୍ଡିଆ କାଳ ବଡାପି ଅସିଲା ଯେ ମଦନା ମୁଣ୍ଡରୁ ତଳାରଟାକୁ ଉଡ଼େଇ ନେଇ ଗଲା । ତଳାରଟା ଗଡ଼ ଗଡ଼ ଯାଉଥେ, ମଦନା ତା ପଛେ ପଛେ ଗୋଡ଼େଇଥେ । ଏଣେ ମାଳତୀ ଯାବତାରେ ଖୋଷା ବାନ୍ଧି ଦେଇ ମଦନାକୁ ଗୁହାଁ ହସିଲା । ମଦନା ରାଗରେ ମୁହଁଟାକୁ ଥନଥଳ କରି ମାଳତୀକୁ ଆଉ କିଛି କହିଲା ନାଇଁ । ଦାଅଲଗା ବେଳ ହେଲାରୁ ଦିହେଁ ଯାକ ହଂସଗୁଡ଼ିକ ଓଡେଇ ନଅରକୁ ଫେରି ଆଇଲେ ।

ତା ଅରଦିନ ସକାଳ ହେଲା । ମଦନାର ମାଳତୀର ଯିମିତ ହଂସ ଓଳେଇ ବାଡ଼ ଭୁଅଉଠି ତାହାରଲେ ମାଳତୀ ସୋଡ଼ା ମୂର୍ତ୍ତିକୁ ଦେଖି କହିଲା:—

"ମନମିରଗରେ ମନମିରଗ,
କପାଳେ ଥିଲା କି ଇ ଦୁରୁ ଯୋଗ ?"

ମୂର୍ତ୍ତି କହିଲା:—

"ମାଳତୀଝର ଗୋ ମାଳତୀଝର,
ବାଳକେମା ହେଇ ଇ ଦୁଃଖ ଥିଲା ?
ମାଅ ଯେତେବେ ଜାଣୁ ଥାଆନ୍ତେ ଯାକୁ
ଦୁଖେ ଫାଟିଯାଉ ଥାଆନ୍ତା ବୁକୁ ।"

ଆରଦିନ ସର ମାଳତୀ ଯାଇ ନାଳ ତଳରେ ମୂର୍ତ୍ତି କୁଣ୍ଡାଇ ବାଂଲାରୁ ମଦନା ହସ ହସି ଯାଇ ଦାଣ୍ଡରେ ବାଳ ଭିଡ଼ା ଦେଲା । ମାଳତୀ ପାଟିକରି କହିଲା :—

"ଆ ଆରେ ବତାସ ଆ ଆ—
ମଦନା ତଳର ନେଇ ଯ ।
ଡେଇଁ ଯାଆ ବଣ ପରବତ
ଇ ମଦନା ହେଉ ହରକତ ।
ମଦନା ଧାଇଁମ ଯେତେବେଳେ
ଖୋଷା ବାନ୍ଧିଦେବ ସେତେବେଳେ ।"

ପବନ ସିମିତ ଆସି ମଦନା ତଳରିଟିକି ଉଡ଼େଇ ନେଇ ଗଲା । ସେ କାନ୍ଦ କାନ୍ଦ ହେଇ ତା ପଛେ ଧାଇଁଲା ; ତଳାର ଧରି ବାହୁଡ଼ିଲା ବେଳକୁ ମାଳତୀ ଲଆଡ଼େ ଖୋସା ବାନ୍ଧି ସାରିଲାଣି । ବାହା ହେଲା । ଦିହେଁ ଆଉ କଏ କାହାକୁ କଥା ନ କହି ଘରକୁ ଗଲେ ।

ତା ଆରଦିନ ମଦନା ମାଳତୀ ପାଖେ ହଂସ ଚରେଇ ନ ନେଇ ପଳେଇ ପଳେଇ ଯାଇ ବୁଢା ରଜାକୁ କହିଲା, "ମଣିମା, ମୁଁ ଆଉ ସେଇ ଦାଣ୍ଡୀଟା ପାଖରେ ହଂସ ଚରେଇ ପାରିବି ନାହିଁ ।"

ରଜା ପଚାରିଲେ, "କାହିଁକି ?" ମଦନା କହିଲା, "ମତେ ସିଏ ବଡ ହଇରାଣ କରୁଚି ।"

ରଜା ଖୋଲି ତାଡ଼ି ପଚାରିବାରୁ ମଦନା ସେଠୁ ଗୋଟି ଗୋଟି କରି ସବୁକଥା କହିଲା, "ଦିନୁଦିନ ସକାଳୁ ଗଲା ବେଳକୁ ସିଏ କଣ କରୁଚି କି ସେଇ ବାଡ଼ ଦୁଆର ପାଖେ ଗୋଟେ ମଲା ଘୋଡ଼ା ମୁଣ୍ଡ ଦେଖି କାନ୍ଦୁଚି । କାନ୍ଦିକାନ୍ଦି ତାକୁ କହୁଚି:—

ମନମିରଗ ରେ ମନମିରଗ,
କପାଳେ ଥିଲା କି ଇ ଦୁରଯୋଗ ?"

ତା କଥା ଶୁଣି ସେ ମୁଣ୍ଡଟା କହୁଚି:—

'ମାଳତୀଝିଅ ଗୋ ମାଳତୀଝିଅ,
ବାଇଜେମା ହେଇ ଇ ଦୁଃଖ ଥିଲା ?
ମାଆ ଯେବେ ଜାଣୁ ଥାଆନ୍ତେ ଯାକୁ,
ଦୁଃଖେ ଫାଟିଯାଉ ଥାଆନ୍ତା ବୁକୁ ।

ଇ ଉତୁରୁ ମାଳତୀ କିମିତି ପଡ଼ିଆକୁ ଯାଇ ବାଳ କୁଣ୍ଡେଇ ବସେ, ଇଏ ବାଳ ଉଡ଼ିଗଲେ ସିଏ କିମିତି ପବନକୁ ଡାକେ, ପବନ କିମିତି ଆସି ତା ଟୋପରଟାକୁ ଉଡ଼େଇ ନେଇଯାଏ, ଇଏ କାହିଁ କାହିଁ ଗୋଡ଼ାଏ—ସବୁକଥା ରଜାଙ୍କ ଆଗରେ କହିଦେଲା । ରଜା ସେଠୁ ମଦନାକୁ କହିଲେ, "ହଉ ବୁଝିଲା, ତୁ ଯାଉଥା ।"

ରଜା ତା ଅବଦାନ ଦେଖିକୁ ତଳେ ଘୋଡ଼ାଭୁଅର ପାଖେ ଲୁଚି କରି ବସିଲେ । ମଦନାର ମାଳତୀର ହଂସ ଓହ୍ଲେଇ ଆଣିଲେ, ମାଳତୀ ଘୋଡ଼ା ମୁଣ୍ଡ ପାଖେ ଲୁହ ବୁହାଇ କହିବାରୁ ମୁଣ୍ଡଟା ମଣିଷ ପରି କଥା କହିଲା । ରଜା ସବୁ ଶୁଣିଲେ । ସେଠୁ ଯାଇ ଯୋଉଠି ସେମାନେ ହଂସ ଚରାନ୍ତି ସେଇ ପଡ଼ିଆରେ ଗୋଟିଏ ବୁଦା ମୂଳେ ଲୁଚି କରି ରହିଲେ । ହଂସ ଛାଡ଼ି ଦେଇ ମାଳତୀ ମୁଣ୍ଡ କୁଣ୍ଡାଉଚି, ମଦନା ଗଲା, ବାଳ ଧ'ରେ କରି ଭିଡ଼ି ଦେଲା । ମାଳତୀ ପାଟିକରି କହିଲା:—

"ଆ ଅରେ ଚଢ଼ାଇ ଆ ଆ
ମଦନା ତଳିର ନେଇ ଯା ।
ତେଇଁ ଯା ବଣ ପରବତ
ଲ ମଦନା ହେଉ ସ୍ୱରଗତ ।
ମଦନା ଧାଇଁମ ଯେତେବେଳେ
ଖୋଷା ବାନ୍ଧୁଥିବ ସେତେବେଳେ ।"

ବନ୍ଧାଣୀ ଆସି ମଦନା ତଳିଟିକୁ ଉଡ଼େଇ ନେଇଗଲା । ରଜା ଯା ଦେଖି ଉଆସକୁ ଫେରି ଆସିଲେ ।

ସକାଳ ବେଳେ ରଜା ମାଳତୀକୁ ଉଆସକୁ ଡକେଇଲେ । ତାକୁ ସବୁ କଥା ପଚାରିଲେ । ସେ କହିଲା, "କହିଲେ ମୁଣ୍ଡକାଟ ଯେବେ ଛାଡ଼ ହେବ ତେବେ କହିବି ।" ତାର ଭୟ, ରାଣୀ ତାକୁ ମାରିଦେବ ବୋଲି ଡ଼ରେଇଛି । ରଜାଙ୍କଠୁଁ ହୁକୁମ ପାଇଲାରୁ ସେ ସବୁ କଥା—ଘରୁ ଆସିଲା ଦିନୁଁ ଲେ ପରଯନ୍ତେ ଯେତେ ଯେତେ କଥା ହୋଇ ଯାଇଛି—ଗୋଟି ଗୋଟି କରି କହିଦେଲା । ରଜା ତା ଶୁଣି କାନ୍ଦି ପକେଇଲେ । ଗନ୍ତାଘରୁ କେତେ ପାଟବସ୍ତ୍ର ଅଳଙ୍କାର ଆଣି ତାକୁ ମଣ୍ଡାଇ

ଦେଲେ । ସିଏ ସାକ୍ଷ୍ୟାଙ୍କ ଅପସରାଟିଏ ପରି ଦିଶିଲା । ଇ ଉତ୍ତୁ ପୁଅକୁ ଉଠେଇ ସବୁ କଥା କହିଲେ । ପୁଅ ମାଳତୀଙ୍କର ହାତ ଧରି ଉଆସକୁ ନେଇଗଲା । ଇ କଥା ରାଜାଙ୍କ ନାଗରା ପିଟା ହେଲା । ଯେଉ କଳାବତୀ ଦାମ୍ଭୀ ରାଣୀ ହେଇଥିଲା ରଜା ତାକୁ ପାଇକ ହାତରେ ପିଟେଇଲେ । ସିଏ ଯାହା ଯାହା କରିଥିଲା ସତ ସତ ସବୁ କହିଦେଲା । ତାପରେ ତାକୁ ଦାନ୍ତ ଗଡ଼ିକରି ହିଣାଇ, ଟଳକଣ୍ଟା ଉପରକଣ୍ଟା କରି ପୋତେଇ ଦେଲେ । ଇ ଧର୍ମେ ରଜା ରାଣୀ ହେଇ ଯୁଗୁରାଜ କଲେ, ପୁଅ ଝିଅ ଦେଖିଲେ, ନାତି ନାତୁଣୀ ଦେଖିଲେ । ଯାହାପାଇଁ ସିଏ ଜନମ ଦଇବ ତା ଆଗରୁ ଲେଖି ଦେଇଥେ ।




କଟକ, ଭାରତୀ ପ୍ରେସରେ ଶ୍ରୀ ବାଲକୃଷ୍ଣ କରଙ୍କଦ୍ୱାରା ମୁଦ୍ରିତ